# ମନ୍ଦାର ଗଡ଼ରେ ଦିନେ

( ସାହସପୂର୍ଣ୍ଣ ଅଭିଯାନ କାହାଣୀ )

ଲେଖକ :

ଡକ୍ଟର ହେମନ୍ତ କୁମାର ଦାସ

ପ୍ରକାଶକ :



କୋଣାର୍କ ପବ୍ଲିଶର୍ସ

ବିନୋଦବିହାରୀ, କଟକ-୭୫୩୦୦୨

ପ୍ରଥମ ପ୍ରକାଶ :

୧୯୮୯

ପ୍ରକାଶକ :

ଚନ୍ଦ୍ରଶେଖର ପାତ୍ର
କୋଣାର୍କ ପବ୍ଲିଶର୍ସ
ବିନୋଦବିହାରୀ, କଟକ-୨

ମୁଦ୍ରଣ :

କୋଣାର୍କ ପ୍ରିଣ୍ଟର୍ସ
ଖଟ୍‌ବନ୍‌ଧାଣ୍ଡି, କଟକ-୮

ମୂଲ୍ୟ : ୧୦-୦୦

MANDAR GADARE DINE

# ସୂଚୀ





## ଏକ

# ଗାଁର ନାମ କଇଁଫୁଲିଆ :

କଳ କଳ ଛଳ ଛଳ ତାନରେ ନଈଟି ବହିଯାଉଚି । କେତେ ବଣ, ବିଲ, ପାହାଡ଼ ଡେଇଁ ଯାଇ ସମୁଦ୍ରରେ ମିଶିଚି । ନାଁଟି ତାର ମନ୍ଦାରୁଆ । ଲୋକେ କହନ୍ତି, ବହୁତ ଦିନ ଆଗରୁ ଏ ରାଇଜ ମରୁଭୂମି ହୋଇ ପଡ଼ିଥିଲା । ଯୁଆଡ଼େ ଅନେଇବ ଖାଲି ଠାଙ୍ଗର ଭୂଇଁ । ଗଛ ପତ୍ର ତ ଦୂରର କଥା —କୁଣଟିଏ ବି କଅଁଳ ନ ଥିଲା ।

ନଈକୂଳରେ ପୂର୍ବଆଡ଼କୁ ମୁହଁ କରି ଠିଆ ହେଲେ, ଧୂଆଁଳିଆ ହୋଇ ଯୋଉ ପାହାଡ଼ ଦେଖାଯାଉଚି, ସେଇଠି ରହୁଥିଲେ ଜଣେ ଋଷି । ନାଆଁ ତାଙ୍କର ମନ୍ଦାର । ତପସ୍ୟା କରି ତାଙ୍କର ଶକ୍ତି ଯେ କାହିଁରେ କେତେ । ଯାହା କହି ଦିଅନ୍ତି, ସାଙ୍ଗେ ସାଙ୍ଗେ ଘଟିଯାଏ ।

ଖାସ୍ ତାଙ୍କରି ଯୋଗୁଁ ମିରିଗଛୁଆ, ବାଘ-ମା ଥନରୁ ଦୁଧ ପିଇଯାଏ । ମୟୂରର ଲମ୍ବା ପୁଚ୍ଛ ତଳେ ଚେକାମେଲା ସାପ ନିଶ୍ଚିନ୍ତରେ ଶୋଇ ରହେ । କେହି କାହାରିକୁ ହିଂସା କରନ୍ତି ନାହିଁ, କି ବାଦ କରନ୍ତି ନାହିଁ ।

ଏମିତି ଜାଗାରେ ଦିନେ କୁଆଡ଼ୁ ଆସି ପହଞ୍ଚିଗଲା ରଜା ପୁଅଟିଏ । ଭୋକରେ ପେଟ ଯାଇ ପିଠିରେ ଲାଗିଚି । ମୁହଁ ଶୁଖିଯାଇଚି । ଲୁଗାପଟା ମଇଳା କୋତର—ପୁଣି କଣ୍ଟା ଝଣ୍ଟା ଲାଗି ଠାଏ ଠାଏ ଚିରିଯାଇଚି । ଭାରି ଥକି ଯାଇଚି । ପାଦ ଯେମିତି ଆଉ ଚାଲୁନାହିଁ ।

ରଜାପୁଅ ଗୋଟିଏ ଗଛମୂଳେ ଆଗ ଘଡ଼ିଏ ବସି ପଡ଼ିଲା । ସୁଲୁସୁଲିଆ ଥଣ୍ଡା ପବନ ବାଜି ଦିହରୁ ଝାଳ ମରିଗଲା । ତାକୁ ଟିକିଏ ଭଲ ଲାଗିଲା । ଅନାଇ ଦେଖିଲା—ଟେଣ୍ଠ ଟେଣ୍ଠ ନାଲି ଟହ ଟହ ଗୁରୁଡ଼ ଆମ୍ବ ଭୂଇଁ ଉପରେ କୋଳି ଭଳି ବିଛୁଇ ହୋଇ ପଡ଼ିଚି । ତାକୁ ଭାରି

ଶୋକ ହେଉଥିଲା । ଆଉ ଡେରି ନ କରି ଆମ୍ବଗୋଟାଇ ପାଟିରେ ପକାଇବାକୁ ଲାଗିଲା ।

ଆମ୍ବଟିମାନ ସିନା ସାନ । ହେଲେ ଭିତରଟି ରସ ଟୁଳୁ ଟୁଳୁ । ଟାକୁଆଟି ଦେଖିବାକୁ ପାନ ଗିଲଟିଏ ଭଳି । ଆମ୍ବ ପୁଣି ଭାରି ସୁଆଦିଆ—ଚିନି ଭଳି ମିଠା—କଥାରେ କହନ୍ତି, ଭୋକ ପେଟରେ ସବୁ ସୁଆଦ । ରଜା ପୁଅ ତ ତିନିଦିନ ହେବ କିଛୁ ଖାଇ ନ ଥିଲା । ସୁଆଦିଆ ଆମ୍ବ ପାଇ ମନ ଇଚ୍ଛା ଖାଇଲା ।

ପେଟ ଥଣ୍ଡା ହେବା ପରେ ସେ ଚାରିଆଡ଼କୁ ଅନାଇ ଦେଖିଲା । ଜଙ୍ଗଲ ମଝିରେ ଇଏ ହଉଛି ଗୋଟିଏ ଖୋଲା ଜାଗା—ଗୋଟିଏ ପଟରେ ଛୋଟ ପୋଖରୀଟିଏ । ସେଥିରେ ପଦ୍ମଫୁଲ ଫୁଟିଛି । ପାଣିକୂଳକୁ ଡେଙ୍ଗା ଡେଙ୍ଗା ଡେମ୍ଫରେ କଇଁ କଢ଼ମାନ ଧୀର ପବନରେ ଦୋହଲୁଛି—ରାତି ହେଲେ ଫୁଟିବ । ପୋଖରୀରେ ହଂସ, ହଂସରାଳୀ ଆଉରି କେତେ ଜାତିର ଚଢ଼େଇ ପହଁରୁଛନ୍ତି । ଶିକଏ ବୋଲି ଦଳ ନାହିଁ—ପାଣି ଭାରି ସଫା—ଚାହିଁଦେଲେ ମୁହଁ ଦିଶିବ ପରା । ଦକ୍ଷିଣପଟର ହୁଡ଼ାରେ ଗୋଟିଏ ବଡ଼ ବଉଳଗଛ । ତାରି ତଳେ ଗୋଟିଏ ଛୋଟଚାଳ ଘୁଉଣିଘର । ବେଶ୍ ସଫା, ସୁତୁରା ।

ଟିକଏ ଦୂରକୁ କଦମ୍ବ ଗଛରେ ମାଡ଼ିଛି ମଧୁମାଳତୀ ଲଟା—ନାଲି ଧଳା ଫୁଲରେ ଗଛ ଲୁଚି ହୋଇ ଯାଇଛି—କଦମ୍ବ ମୂଳରେ ଗୋଟିଏ ବେଦୀ ଅଛି ନା କଣ !

ବୁଦୁବୁଦୁକିଆ ମଲ୍ଲୀଗଛମାନଙ୍କରେ ଫୁଲ ଯେ ଲଦି ହେଇଛି—ବାସନାରେ ଚାରିଆଡ଼ ଫାଟି ପଡୁଛି । ଦୂରକୁ ବଡ଼ ବଡ଼ ଗଛରେ ପେନ୍ଥା ପେନ୍ଥା ହୋଇ ଝୁଲୁଛି ଆକାଶ ମଲ୍ଲୀ । ଗଛ ଗହଳରେ ଲୁଚିରହି କୋଇଲି, ହଳଦୀବସନ୍ତ, କୁମ୍ଭାଟୁଆ ଆଦି ଚଢ଼େଇ ରାବୁଛନ୍ତି । କୋଉଠୁ ଗୋଟିଏ ମୟୂର ବୋବାଇ ଉଠିଲା—ଆଁ···ଉଁ···ଆଁ···ଉଁ···ଚାରିଆଡ଼କୁ ଅନାଇ ରଜାପୁଅର ମନ ଖୁସି ହୋଇଗଲା । ଘୋଡ଼ଜଙ୍ଗଲ ଭିତରେ ସିଏ ଯେ ଏକୁଟିଆ ବୁଲୁଛି, ଏ କଥା ସେ ଯେମିତି ଭୁଲିଗଲା ।

ଧୀରେ ଧୀରେ ଉଠି ଗୁଳଘର ଆଡ଼କୁ ଗୁଲିଲା । ଘର ଭିତରେ ତ କେହି ନ ଥିଲେ । ହଁ, କଦମ୍ବମୂଳ ବେଦୀ ଉପରେ ଜଣେ ଋଷି ଆଖିବୁଜି ବସି ରହିଥିଲେ । ରାଜାପୁଅ ତାଙ୍କ ପାଖକୁ ଗୁଲିଗଲା ।

ସେ ଜାଣିଥିଲା, ଋଷି ଜଣକ ଭଗବାନ୍‌ଙ୍କ ନାଆଁ ନେଉଛନ୍ତି । ଏତେବେଳେ ତାଙ୍କୁ ଡ଼ାକିବା ଉଚିତ ନୁହେଁ । ନିଶ୍ଚୟ କିଛି ସମୟ ପରେ ସେ ଆଖି ଖୋଲିବେ । ସେତିକିବେଳେ ତାଙ୍କୁ ଯାହା କହିବାର କଥା କହିବ । ଏଇଆ ଭାବି ରଜାପୁଅ ହାତଯୋଡ଼ି ତାଙ୍କ ଆଗରେ ବସି ରହିଲା । ଅନେକ ସମୟ ବିତିଗଲା । ଶେଷରେ ଋଷି ଆଖି ମେଲିଲେ । ରାଜାପୁଅ ଆଡ଼କୁ ଅନାଇ ଅଳପ ଅଳପ ହସିଲେ ।

ରାଜା ପୁଅ ଲମ୍ବ ହୋଇ ତାଙ୍କ ଆଗରେ ପଡ଼ିଗଲା । ଋଷି କଅଁଳ କଣ୍ଠରେ କହିଲେ, "ଉଠ ବାବୁ ଉଠ ।"

ରଜାପୁଅ ଉଠି ଋଷିଙ୍କ ପାଦ ଧୂଳି ନେଇ ମୁଣ୍ଡରେ ମାରିଲା । ଋଷି କହିଲେ, "ଶୁଣ ବାବୁ ! ସାବତ ମା ତୋ' ନାଁରେ ଏଣୁ ତେଣୁ କହିବାରୁ ରାଜା ତୋ ଉପରେ ରାଗିଲେ । ତତେ ରାଜ୍ୟରୁ ବାହାର କରି ଦେଲେ । ତୁ କିଛି ଚିନ୍ତା କରନା । ଭଗବାନ୍ ଯାହା କରନ୍ତି, ମଣିଷର ଭଲ ପାଇଁ କରନ୍ତି ।"

ରାଜାପୁଅ ଭାରି ଆଶ୍ଚର୍ଯ୍ୟ ହୋଇଗଲା । ଋଷି ଜଣକ ତା'ବିଷୟରେ ଜାଣିଲେ କିପରି ? କିଏ କଣ ଆଗରୁ ଆସି ତାଙ୍କୁ ସବୁ କଥା କହି ଯାଇଛି ?

ଋଷି କହିଲେ, "ଶୁଣ୍ ମିହିରଭାନୁ ! ମୋ ନା ମନ୍ଦାର । ମୁଁ ଏଇ ବଣରେ ତପସ୍ୟା କରେ । ତୋ କଥା ମୁଁ ସବୁ ଜାଣେ ।"

ରାଜାପୁଅର ମନେ ପଡ଼ିଗଲା । ତା'ର ମା-ଏରାଜ୍ୟର ରାଣୀ ଯେତେ ବେଳେ ବଞ୍ଚିଥିଲେ ସେ ତାକୁ କେତେଥର ଋଷି ମନ୍ଦାରଙ୍କ କଥା କହିଛନ୍ତି । କହିବାକୁ ଗଲେ ଋଷିଙ୍କ କଲ୍ୟାଣରୁ ହିଁ ରାଣୀ ରସମଞ୍ଜରୀ ମିହିରଭାନୁକୁ ପାଇଥିଲେ । ଋଷି ସେତେବେଳେ କୁଆଡ଼େ ରାଣୀଙ୍କୁ ସାବଧାନ

କରାଇ ଦେଇଥିଲେ । ପୁଅ ତ ହେବ, ତେବେ ରାଣୀ ବଂଚିବେ ନାହିଁ । ପୁଅଟିଏ ପାଇବାକୁ ରସମଞ୍ଜରୀ ଏତେ ଉତଳା ହେଉ ଥାଆନ୍ତି ଯେ, ସେ ଋଷିଙ୍କ କଥା ଶୁଣିଲେ ନାହିଁ । ରାଜାପୁଅ ମିହଭାନୁ ଯେତେବେଳେ ନିଜ କଥା ନିଜେ ବୁଝିବା ବୟସର ହୋଇଗଲା ସେତେବେଳେ ରସମଞ୍ଜରୀଙ୍କର ଶେଷ ସମୟ ଆସିଗଲା । ତା' ପରେ ରାଜା ଆଉ ଥରେ ବାହାହୋଇ ରାଣୀ ଆଣିଲେ । ସମସ୍ତେ ରସମଞ୍ଜରୀଙ୍କୁ ଭୁଲିଗଲେ । ଏକା ଭୁଲି ପାରିଲା ନାହିଁ ମିହଭାନୁ । ସେ ସବୁବେଳେ ମାକୁ ଝୁରିହେଲା ।

ନୂଆ-ମା କେଜାଣି ଯଦି ତାକୁ କୋଳେଇ ନେଇ ଥାଆନ୍ତେ, ଟିକିଏ ସ୍ନେହ ଆଦର କରୁ ଥାଆନ୍ତେ; ତେବେ ଅବା ସେ ମାକୁ ଏତେ ମନେ ପକାନ୍ତା ନାହିଁ । ନୂଆ-ମା ପ୍ରଥମରୁ ତାକୁ ଦୂର ଦୁର ମାରି ମାରି କରିବାକୁ ଲାଗିଲେ । ଶେଷକୁ ଅବସ୍ଥା ଏମିତି ହେଲା ଯେ, ମିହଭାନୁ ଆଉ ଘରେ ରହିପାରିଲା ନାହିଁ । ଏଇ ମଉକାରେ ନୂଆ ମା ତା' ନାଁରେ ଏଣୁ-ତେଣୁ ରାଜାଙ୍କୁ କହିଲା । ରାଜା କୋଉ ବୁଝୁଛନ୍ତି ! ସାଙ୍ଗେ ସାଙ୍ଗେ ହୁକୁମ୍‌ଦେଲେ ମିହଭାନୁ ଆଉ ଏ ରାଜ୍ୟରେ ରହି ପାରିବ ନାହିଁ ।

ମିହଭାନୁ ଏସବୁ ଭାବୁଥିଲା ବେଳେ ଋଷି ତାକୁ କହିଲେ, "ମୁଁ ଜାଣେ, ତୋର ବାପା ତୋ ପ୍ରତି ଅନ୍ୟାୟ କରିଛନ୍ତି । ତୁ ନିଜେ' ଅଳପ ଦିନରେ ନିଜର ଗୋଟିଏ ରାଇଜ ଗଢିପାରିବୁ । ଆଜଠୁ ସେଇ କାମରେ ତତେ ଲାଗିବାକୁ ପଡ଼ିବ ।"

ମିହଭାନୁ ଆଶ୍ଚର୍ଯ୍ୟ ହେଲା । କହିଲା—"ମୁଁ ଏକୁଟିଆ, ପୁଣି ପିଲାଟିଏ । ମୋର କୋଉ ସୈନ୍ୟ ସାମନ୍ତ ଅଛି ନା ହାତହତିଆରି ଅଛି ଯେ, ମୁଁ ନିଜ ପାଇଁ ଗୋଟିଏ ରାଇଜ ଗଢି ପାରିବ, ଏଥିପାଇଁ ଯେ କେତେ ହାତୀ,ଘୋଡ଼ା ଲୋକବାକ ଦରକାର, ତା'କଣ ମୁଁ ଜାଣିନାହିଁ ?"

ଋଷି ଅଳପ ହସିଲେ । କହିଲେ - "ବାବୁ ! ତୁ ହେଲୁ ରାଜାପୁଅ । କଥାରେ କହନ୍ତି ପରି, ବୁଝିବ ଘର ପୁଅ ବୁଝିବ । ରାଇଜ କଥା ତୁ ବୁଝିବୁ ନାହିଁ କେମିତି ? ତେବେ ତୁ ଯାହା କହିଲୁ , ଖାଲି ସେତିକରେ ରାଇଜ ଗଢି ହେବନାହିଁ । ତା' ବାହାରେ ଲୋଡ଼ା ବୁଦ୍ଧି ଆଉ ପରିଶ୍ରମ ।

କାମ—ଯାହା ହେଉନା କାହିଁକି, ଏ ଦୁଇଟି ଥିଲେ ସେଥିରେ ନିଶ୍ଚେ ସଫଳତା ମିଳିବ ।”

ମିହିରଭାନୁ ଚୁପ୍ ଚାପ୍ ମନ୍ଦାରଙ୍କ ଆଡ଼କୁ ଅନାଇ ରହିଲା । ମନ୍ଦାରପୁଣି ଆରମ୍ଭ କଲେ, “ତୋର ମାଙ୍କୁ କଥା ଦେଇ ଥିଲି, ବିପଦରେ ପଡ଼ିଲେ ତୋତେ ମୁଁ ନିଶ୍ଚୟ ସାହାଯ୍ୟ କରିବି । ଆଜି ସେଇ ବେଳ ଆସିଛି ।”

ମିହିରଭାନୁ କହିଲା –“କୋଉଠି ମୁଁ ବୀଜ ରଖିବି ?”

ମନ୍ଦାର କହିଲେ—“ଏ ବଣ ବାହାରେ ଯୋଉ ବଡ଼ ଜାଗା ପଡ଼ିଛି ସେଇଠି ତୁ ଥାପିବୁ ତୋର ବୀଜ ।”

ମିହିରଭାନୁ କହିଲା—“ସେଇ ଜାଗା ! ସେଇଟା ତ ଟାଙ୍ଗର ଭୂଇଁ । ଘାସ ପତରଟିଏ ବି ଉଠୁନି ନାହିଁ ସେଠି । ପାଣି ଅଭାବରେ, ସବୁଆଡ଼ ଶୁଖିଲା ।”

ଋଷି କହିଲେ, “ଆରେ ବାପୁ ! ମୁଁ ସବୁ ଜାଣେ । ତା’ର ଗୋଟାଏ ବାଟ ବି ଚିନ୍ତା କରିଛି । ତୁ ଦେଖ୍ ମୁଁ କଣ କରୁଛି ।”

ଏତିକି କହି ଋଷି ଠିକା ପକାଇ ବସିପଡ଼ି, ତାଙ୍କ ତିମୁଟାରେ ଦୁଇଥର ମାଟିକୁ ଛୁଇଁଦେଲେ । ହଠାତ୍ ପିଚକାରି ମାରିଲା ପରି ପାଣିର ଗୋଟାଏ ଧାର ଭୂଇଁ ଫଟାଇ ବାହାରି ଆସିଲା । ଋଷି ଅଳପ ଅଳପ ହସୁଥାଆନ୍ତି । ପାଣି ଧାର ଧୀରେ ଧୀରେ ବାଟ କାଟି ତଳଆଡ଼କୁ ବହିଗଲା । ମନ୍ଦାର ଏଥର ମିହିରଭାନୁ ଆଡ଼କୁ ଅନାଇ କହିଲେ, “ମୋ ଆଶ୍ରମ ପିଣ୍ଡାରେ ଯୋଉ ଶଙ୍ଖଟି ଥୁଆହୋଇଛି ଦେଖୁଛୁ ତ ! ଯା, ସେଇଟିକି ନେଇ ଆ । ତୁ ଯୋଉବାଟ ଦେଇ, ଶଙ୍ଖ ବଜାଇ ବଜାଇ ଯିବୁ, ପାଣିଧାର ସେଇ ବାଟ ଦେଇ ବହିଯିବ । ଆଉ ଏ ପାଣି ସାଧାରଣ ପାଣି ନୁହେଁ । ମା ଗଙ୍ଗା ଏଧାର ଭିତରଦେଇ ମାଟି ଉପରକୁ ଆସିଛନ୍ତି । ଯୋଉ ଅଞ୍ଚଳ ଦେଇ, ଏ ବହିଯିବ, ଫୁଲଫଳ ଗଛଲତାରେ ସେ ଅଞ୍ଚଳ ହସି ଉଠିବ । ମୁଁ ସଫା ଦେଖିପାରୁଛି, ଆଜି ଯୋଉ ଜାଗା ଟାଙ୍ଗର ହୋଇ ପଡ଼ିଛି, କାଲିଠୁ ସେଇ ଜାଗା ଜୀବଜନ୍ତୁରେ ଭରିଯିବ । ମଣିଷ ଆସିବେ,

ପଶୁ ଆସିବେ, ପକ୍ଷୀ ଆସିବେ । ସେଇଠି ତୁ ବସେଇବୁ ତୋର ନୂଆରାଇଜ ।"

ମିହଭାନୁ ଉଠି ଠିଆ ହେଲା । ଋଷିଙ୍କୁ ଦଣ୍ଡବତ ଜଣାଇ ବିଦାୟ ମାଗିଲା । ଆଉ ପଦୁଟିଏ କଥା ବି ପଚାରିଲା ନାହିଁ । ଋଷି ନିଜ ଜଟାରୁ ବାହାର କଲେ ଗୋଟିଏ କଳା ମନ୍ଦାରଫୁଲ । କହିଲେ, "ନେ ଫୁଲଟିକୁ ଭଲ କରି ସାଇତି ଥିବୁ । ଯେତେଦିନ ପର୍ଯ୍ୟନ୍ତ, ଏହା ନିରାପଦରେ ଅଛି, ସେତେଦିନ ଯାଏ, ତୋର କିଛି ବିପଦ ନାହିଁ । ଯା, ମୋ କଥା ମନେ ରଖିଥିବୁ । ଦେହର ବଳ ଅପେକ୍ଷା ବୁଦ୍ଧିର ବଳ ବେଶୀ । କେବେ ପରିଶ୍ରମ କରିବାକୁ ଡରିବୁ ନାହିଁ । ତୁ ରଜା ପିଲା—ତୋର ଡର କଣ ? ଭଗବାନ୍ ନିଶ୍ଚୟ ତୋର ମଙ୍ଗଳ କରିବେ ।"



ଏତିକ କହି ଋଷି କୁଡ଼ିଆ ଭିତରକୁ ଚାଲିଗଲେ । ମନ୍ଦାରଫୁଲଟିକୁ ହାତରେ ଧରି, ଶଙ୍ଖ ବଜାଇ ବଜାଇ ମିହଭାନୁ ଆଗେଇ ଚାଲିଲା । ତା' ପଛେ ପଛେ—ପାଣି ଧାରା ।

ଲୋକେ କହନ୍ତି, ମିହଭାନୁ ଏହାପରେ ମନ୍ଦାରଗଡ଼ ବସାଇଥିଲେ । ତାଙ୍କର ଘର ଗୋଟିଏ ବଡ଼ ରାଜ୍ୟ ବି ହୋଇଥିଲା । ମନ୍ତ୍ରୀ, ସେନାପତି,

ପାଣ୍ଡ, ମିଶ୍ର ସମସ୍ତେ ଆସିଥିଲେ । ରାଜା ମିଶ୍ରଭାନୁ ଋଷିଙ୍କୁ ମୋଟେ ଭୁଲି ନ ଥିଲେ । ନିଜ ପତାକାରେ ସେଇ ମନ୍ଦାର ଫୁଲଟିର ଚିତ୍ର ଅଙ୍କାଇ ଥିଲେ । ନିଜ ରାଜ୍ୟର ନାଁ ଦେଇଥିଲେ ମନ୍ଦାରଗଡ଼ ।

ଜନମ ହେଲେ ଦିନେ ନିଶ୍ଚେ ମରିବାକୁ ହୁଏ । ରାଜା ମିଶ୍ରଭାନୁ ବି ଦିନେ ସେମିତି ମରିଗଲେ । ତାଙ୍କ ପରେ ତାଙ୍କର ବିରାଟ ରାଜ୍ୟ ଧୀରେ ଧୀରେ ନଷ୍ଟ ହୋଇଗଲା । ମନ୍ଦାରଗଡ଼ ଭାଙ୍ଗିରୁଜି ମାଟିରେ ମିଶିଗଲା । ଏବେ ସେଠି ଗୋଟିଏ ବଡ଼ ମାଟିକୁନ୍ଦ ଠିଆ ହୋଇଛି । ବଣୁଆ ଗଛଲତା ତା' ଉପରେ ମାଡ଼ିଛି । ସେଠି ଖାଲି ସାପ ଗୋଧି ପଣ ପଣ । ଡରରେ ଦିନବେଳେ ବି ପିଅଲେ କେହି ଯାଆନ୍ତି ନାହିଁ ।

ସବୁ ତ ଯାଇଚି । ରହିଯାଇଚି ଖାଲି ମନ୍ଦାରୁଆ । ସେଇ ନଈ । ମିଶ୍ରଭାନୁ ଶଙ୍ଖ ବଜାଇ ବଜାଇ ଯାହାକୁ ବାଟ କଢ଼ାଇ ଆଣିଥିଲେ । ସେଇ ନଈର ପାଣି ପାଇ ଦିନେ ଟାଙ୍ଗର ଭୂଇଁରେ ସବୁଜ ଗଛଲତା ଭର୍ତ୍ତି ହୋଇ ଯାଇଥିଲା । କେଉଁ କାଳରୁ ଏଇ ନଈ ଲୋକମାନଙ୍କୁ ମା'ପରି ପାଳିଆସୁଚି । ସେମିତି କଳ କଳ ନାଦ କରି ବହି ଚାଲିଚି ।

ସେଇ ନଈକୂଳର ଗାଁଟିଏ । ନାଆଁଟି ତାର କଇଁଫୁଲିଆ । ସହରଠାରୁ ବହୁତ ଦୂରରେ । ଗାଁଟି ବେଶୀ ବଡ଼ ନୁହେଁ । ଧୂଳିଆ ସଡ଼କଟିଏ ଗାଁ ମଝି ଦେଇ ଚାଲିଯାଇଚି । ତା'ର ଦୁଇପଟେ ଦୁଇଧାଡ଼ି ଚାଳଘର । ଗାଁର ପ୍ରାୟ ସବୁ ଲୋକ ଚାଷୀ । ଜଣେ ଅଧେ କଏ ରୋଜଗାରରେ ଚାକରି କରନ୍ତି ସିନା ନ ହେଲେ ଅଧିକାଂଶ ଲୋକ ସକାଳ ହେଲେ, ମୁଣ୍ଡରେ ଠେକାଟାଏ ଲେଖା ଭିଡ଼ି ବାହାରିକୁ ଆସନ୍ତି । ଲଙ୍ଗଳଯୋଚ ବଳଦ ଆଗେ ଚାଲିଯାଆନ୍ତି । ମାଟିକୁ ମା ବୋଲି ମନେକରି, ତାରି ସାଙ୍ଗରେ ଲାଗିଥାଆନ୍ତି । ଦିନସାରା ବିଲରେ ରହନ୍ତି । ଖିଆପିଆ ସବୁ ସେଇଠି । ସଞ୍ଜ ହେଲେ ଘରକୁ ଫେରନ୍ତି । ଘରକଥା ବୁଝନ୍ତି । ଆଉ ସଞ୍ଜ ଗଡ଼ିଗଲେ, ଯାହାକୁ ଯାହା ମିଳିଲା ମୁହଁରେ ଦି'ଟା ଦେଇ ଶୋଇ ପଡ଼ନ୍ତି ; ଶୋଇବା ଆଗରୁ ପାଦରେ ତେଲ ମାଲିସ କରନ୍ତି । ପାଠ କହିଲା—

"ମୁଣ୍ଡରେ ଠେକା, ପାଦରେ ତେଲ,
ବଇଦ ସାଙ୍ଗରେ କରିବୁ ଗେଲ ।"

ଘରକୁ ଘର ସେ ଗାଁରେ ଥରେ ହେଲେ କାହାର ମୁଣ୍ଡବଥା ହେବା ବି ଶୁଣାନାହିଁ ।

ସୁଖରେ ଦୁଃଖରେ ଗାଁ ଲୋକଙ୍କର ବେଳ କଟେ । ପୂଜା ପାର୍ବଣ ହେଲେ ସେମାନଙ୍କର ମଉଜ । ଘରେ ପିଠାପଣା ହୁଏ । ପିଲାମାନେ ନୂଆଲୁଗା ପାଆନ୍ତି । ଭଲ କରି ଖିଆପିଆ ହୁଏ । ଆରଦିନ ସକାଳୁ ପୁଣି ହଳବାଡ଼କୁ ବାହାରି ଯାଆନ୍ତି । ପିଲାମାନେ ଦିନ ଗଣନ୍ତି, ପୁଣି କେବେ ଆସିବ; ଦୋଳ, ଦଶରା, ଚଇତ ପୂର୍ଣ୍ଣିମା ଅବା ଖୁଦୁରୁକୁଣୀ ।

ସେଇ ଗାଁର ଜଗୁ ସାମଲ । କାହାରି ଦ୍ୱାରଗୁହାରିରେ ନ ଥାଏ । ଜଣେ ଶ୍ରେଷ୍ଠ କାଠିଆ ଚାଷୀ । ଗୁହାଳରେ କାଳୀଧଉଳୀ ଦୋଇ ଦୁଇଟା ଗାଈ । ଟେଡ଼ିଆ ଜଠିଆ ହୋଇ ଘରେ ସବୁବେଳେ ଦୁଧ ଟିକିଏ, ଦହି ଟୋପେ, ଛେନା ଖଣ୍ଡେ ପଡ଼ିଥାଏ । ଜଗୁ ସାମଲର ମା ବୁଢ଼ୀ ଘର ଘରଣୀ । ବଳକା ଦୁଧକୁ ଦହି ବସାଇ ଦିଏ । କୋଉ କାଳର ପାଚିଲା ହାଣ୍ଡି ଟିଏ ଅଛି । ଖୁଆରେ 'ସର୍‌ର୍' 'ସର୍‌ର୍' କରି ଦହି ମନ୍ଥାଏ । ଲହୁଣୀଟିକକୁ ଚୁଲିରେ ବସାଇ ଘିଅ ମାରି ବଡ଼ାରେ ସାଇତି ଦିଏ । ବେଳ ଅବେଳରେ ପିଲାମାନଙ୍କୁ, ଗଲାଆଇଲା ବନ୍ଧୁବାନ୍ଧବଙ୍କୁ ସେଇଥିରେ ସର୍ଭୁଳେ ।

ଗୁହାଳରେ ଅଛନ୍ତି ପୁଣି ଦୁଇମୂର୍ତ୍ତି ବଳଦ । ସାମଲପୁଅ ସବୁବେଳେ ତାଙ୍କରି ପିଚ୍ଛରେ ଲାଗିଥାଏ । କୁଣ୍ଡା, ତୋରାଣି, କୁଳ୍ତ, କୋଳଥ ସିଝା କରି ତାଙ୍କ ପେଟରେ ପୂରାଏ । ଗୁହାଳରେ ତାଙ୍କ ରହିବା ଥାନକୁ ଟାଇଲ୍ ପକାଇ ଗଡ଼ାଣିଆ କରିଛି । ମୂତ, ପାଣି ସବୁ ତଳ ଆଡ଼କୁ ବୋହିଯାଏ । ଜଗୁ ଦିଓଳି ନିଜ ହାତରେ ଗୁହାଳ ସଫା କରେ । ସଞ୍ଜହେଲେ ଗୁହାଳରେ ଧୂଆଁ ଦିଏ । ମଶାହେବେ ନାହିଁ । ଡାଆଁଶ ଟାଏ, ମାଛି ଟାଏ, ବସିଲେ ନିଜ ହାତରେ ଝୁରୁଣ୍ଡାଇ ଦିଏ । ବଳଦ ବି ହୋଇଛନ୍ତି ସେମିତି - ଦେହରୁ ମାଛି ଖସି ପଡ଼ିବ । ଘର ଚଞ୍ଚଳିଆ । ବେକରେ ଜୁଆଳି ଲଦିଦେଲେ ଘଣ୍ଟାକରେ ମାଣେ—ହଳ ଉଠିଆ କରିଦେବେ । ପୁଣି ଏତେ ସୁଧାର ଯେ, କାହାରି ହଳ ବାଡ଼ରେ ମୁହଁ

ମାରନ୍ତେ ନାହିଁ । ଲୋକେ କହନ୍ତି, ସେତ ବଳଦ ନୁହେଁ । ଜଗୁଆର ଦୁଇପୁଅ ।

ଚଳିବାଡ଼ିରୁ ମେହନତ କରି ସାମଲ ଯାହା ଉପୁଜାଏ, ସେଇଥିରେ ତା'ର ଦୁଃଖେ ସୁଖେ ଚଳିଯାଏ । ଘରେ ତା'ର ସ୍ତ୍ରୀକୁ ଛାଡ଼ି ତିନି ଛଅଟି । ବଡଟି ପୁଅ । ନାଆଁ ମଦନ । ବାର ତେର ବରଷର ଚଷାଘର ପିଲା । ହେଲେ ନ ଜାଣିଲ ଲୋକେ କହିବେ– ସତର ଅଠର ବରଷର ପିଲା । ମୁଣ୍ଡରେ ବୋଝେ ହବ କୁଂଚୁକୁଂଚିଆ ବାଳ । ଆଖି ଦିଓଟି ଯେ ସବୁବେଳ ଡ଼ଳ ଡ଼ଳ । ଲମ୍ବା ଭୃରୁ, ଠିଆନାକ ତଳକୁ ନାଲି ନାଲି ସରୁଆ ଓଠ । ବାଟରେ ଗଲେ– ଲୋକ ବ ଘଡ଼ିଏ ଅନାନ୍ତି ।

ସାନ ଭଉଣୀ ମାଳତୀଟା ସାତ ଆଠ ବରଷର ପିଲା । ସିଏ ବି ସେଇ ମଦନ କାଟର । ପିଲାଟା ନା – ସବୁବେଳେ ଖେଳରେ ମନ । ମଦନ ତ କିଛି ଦିନ ଚାଟିଶାଳୀରେ ବସିଛି । ପୋଥିଧରି ବୋଲି ପାରେ । ମିଶାଣଟା ଫେଡ଼ାଣଟା ବି କରି ଦେଇପାରେ । ମାଳତୀ ତ ଝିଅ - ପିଲା । ତାକୁ ଚାଟିଶାଳୀ ଯିବା ମନା । ହେଲେ ମଦନଠୁ ସେ ବି କିଛି କିଛି ପାଠ ଶିଖି ଯାଇଛି । ଉଗ ଡ଼ଗ କରି ପୋଥି ଗାଇଯାଏ । ବୁଢ଼ୀ ମା କାନରେ ପଡ଼ିଲେ, ସେ ଖାଇ ଯିବେ । ମାରିବାକୁ ଗୋଡ଼ାଏ ।

ଭାଇଭଉଣୀ ଦି'ଜଣଙ୍କର ଖୁବପଟେ । ଦି'ଜଣ ସବୁ ବେଳେ ପାଖି ଭୂଷି କରୁ ଥାଆନ୍ତି ସିନା । ହେଲେ କେତେବେଳେ କେମିତି, ଜଣେ ନ ଥିଲେ ଆଉ ଜଣକ ତା' ଆସିବା ବାଟକୁ ଅନାଇ ବସିଥାଏ । ଭଲମନ୍ଦ କିଛି ହେଲେ ଛୁଏଁ ନାହିଁ ।

ପଢ଼ଣା ଘର ଭଗି ବାଳକ ବଅସରେ ଜଗୁଠାରୁ କିଛି ସାନ ହେବ । ଟୋକାଟା ଟିକିଏ ଦୁଣ୍ଡା ଆଉ ହୁରୁମା—ହେଲେ କ'ଣ ହେବ, ପର ଉପକାର କରିବାକୁ ଜୀବନ ଦେଇ ଦେବ । ତା'ର ପୁଣି ବେଳେ ବେଳେ କଣ ମନ ହୁଏ କେଜାଣି ଘରଛାଡ଼ି ପଳାଏ । କିଛି ଦିନ ଏଣେ ତେଣେ ବୁଲେ । ଯେମିତି ଯାଇଥାଏ, ପୁଣି ଦିନେ ସେମିତି ଲେଉଟି ଆସେ । ଏମିତି ବୁଲି ବୁଲି ସେ କେତେ– ଦେଶ ଦେଖିଛି । କେତେ ନୂଆ

କଥା ଜାଣିଚ, କୋଉଠି ଭୂତ, କୋଉଠି ରାକ୍ଷସ, କୋଉଠି ପକ୍ଷୀ — କୋଉଠି ବାଘଭାଲୁ ଏମିତି କେତେ କଥା ।

ମଦନ ଆଉ ମାଳତୀ ତାକୁ ଭାରି ଭଲପାଆନ୍ତି । ସବୁଦିନେ ସଞ୍ଜବେଳେ ଦି'ଜଣଯାକ ତା' ପାଖରେ ବସି ଗପଶୁଣନ୍ତି, ଗୀତବୋଲନ୍ତି ନ ହେଲେ ଡିବିର ଆଲୁଅରେ ବାଘବକରା ଖେଳନ୍ତି । ବାରିକ ପୁଅ ବି ଏ ଦୁହିଁଙ୍କୁ କମ୍ ଭଲପାଏ ନାହିଁ । ଦିନସାରା ତ ମଦନ ଭଗିର ପଛେ ପଛେ ଥାଏ । ଭଗି ନଈରେ ବନ୍ସୀ ପକାଉଚି, ମଦନ ତା' ପାଇଁ ଜିଆ ଖୋଳିଆଣୁଚି । ଗଛ ଅଗରେ ପାଚିଛି ନାଲି ଟହ ଟହ ସୁନ୍ଦରୀ ଆମ୍ବ, ଭଗି କହିବାମାତ୍ରେ ମଦନ ଅଣ୍ଟାରେ ଗାମୁଛାଭିଡୁଚି, ଗୁଣ୍ଡୁଚିମୂଷାଭଳି ଚଢ଼ିଯାଇ ଆମ୍ବଟା ପାରି ଆଣୁଚି । ମଦନ ଭାବେ, ଭଗିଦାଦା ହଉଚି ଏ ଦୁନିଆଁର ସବୁଠୁ ବଡ଼ବୀର ।

ଭଗି ବାହାରୁ ବୁଲିବୁଲି କରି ଫେରିଲା ବେଳେ, କିଛି ନା କିଛି ନୂଆ ଜିନିଷ ଏମାନଙ୍କ ପାଇଁ ଆଣିଥାଏ । ଦି'ଜଣଙ୍କ ସାଙ୍ଗରେ ଖେଳେ-ବୁଲେ । ଗୋଟିଏ ଖେଳରେ ଭଗି ଆଉ ମଦନ ଭାରି ମଜାପାଆନ୍ତି । ମାଳତୀ କଣ ଗୋଟାଏ ଚୁପ୍ ଚୁପ୍ ଖାଉଥିଲା ବେଳେ ଭଗିପଛରୁ ଚିଲ ଭଳି ଛୁଟିଆସେ । ଖାଇବାଜିନିଷକୁ ଝାମ୍ପି ନେଇ ପଳାଏ । ମାଳତୀଟା ସରଳିଆ ପିଲା । ସିଏ ପ୍ରଥମେ ବୋକାଙ୍କ ଭଳି ଅନାଏ । ମଦନ କୋଉଠି ଥାଏ, ତାଳିମାରି ଠୋ ଠୋ ହସି ଉଠେ । ମାଳତୀ ହାଉ ହାଉ କାନ୍ଦି ଉଠେ । "ନେଇଗଲା, ଭଗିଦାଦା ନେଇଗଲା," କହି ଭୂଇଁରେ ଗଡ଼ିଯାଏ । ମାସେ ପନ୍ଦର ଦିନରେ ଥରେ ଅଧେ ଏମିତି ଘଟଣା ନିଶ୍ଚେ ଘଟେ ।

ଦିନକର କଥା । ମାଳତୀ ମଣ୍ଡାପିଠାଟିଏ ଖାଉଛି । ଥାଳିଆଟିଏ ହାତରେ ଧରିଚି । ସେଥିରେ ଅଛି ଆଉ ଗୋଟିଏ ପିଠା । କୋଉଠି ଥିଲା ମାଛିଆ ଚିଲ ସାଇଁ କରି ତଳକୁ ଓହ୍ଲାଇ ଆସିଲା । ମାଳତୀ କିଛି ଜାଣିବା ଆଗରୁ ଝାମ୍ପମାରି ପିଠାଟି ନେଇ ଚାଲିଗଲା । ମାଳତୀ ହାଉ ହାଉ ହୋଇ ପାଟି କରୁଥାଏ । "ନେଇ ଗଲା, ଭଗିଦାଦା ନେଇଗଲା—"

ମାଳତୀର ବୋଉ ପାଟିଗୋଳ ଶୁଣି ଦଉଡ଼ି ଆସିଲେ । ଆଜି ସେ ଯେମିତି ହେଲେ ଭଗିଆକୁ ପାନେ ଦେବେ । ମାଳତୀ ସେତେବେଳେ ଯାଏ

ଯେମିତି କାନ୍ଦୁଥାଏ । ମଝିରେ ମଝିରେ ପାଟି କରୁଥାଏ, 'ଭଗିଦାଦା ନେଇଗଲା ।"

ଦାଣ୍ଡରେ ଜୁଆଳୀ କାନ୍ଧରେ ଥୋଇ ଯାଉଥିଲା ପାଣୁଆ । ଭଗିଆ କଥାଶୁଣି ସେ ଆଚମ୍ବିତ ହେଲା । ଭଗି ତ ଜୋର ମୁହଁରେ ମଦନା ସାଙ୍ଗରେ ମାଛ ଧରୁଛି । ବାଟ ଏଠୁ ବଜର କୋଶେ । ସିଏ କଣ ଉଡ଼ିଆସି ମାଳୀ ହାତରୁ ପିଠା ଝାମ୍ପିନେଲା ?

ଏତିକିବେଳେ 'ଚରରର ଚରରର' ରଡ଼ି ଶୁଣି ପାଣୁଆ ଉପରକୁ ଅନାଇଲା । ଡେଙ୍ଗା ନଡ଼ିଆଗଛର ବାହୁଙ୍ଗା ଉପରେ ବସିଛି ଚିଲ । ଦୁଇ ଗୋଡ଼ରେ ଜାକି ଧରିଛି ପିଠାକୁ । ବେଳେ ବେଳେ ସେଥିରେ ମୁହଁ ମାରୁଛି ।

ସମସ୍ତେ କଥାଟାକୁ ବୁଝିଗଲେ । ମାଳତୀ ବୋଉ ମାଳତୀ ଉପରେ ଭାରି ରାଗିଲା । କହିଲା, 'ଏତେ ପିଲାଟାଏ ହେଲାଣି । ଏଡ଼କ ଅଥରପୀଟା । ବଡ଼ ହୋଇ କ'ଣ କରିବ କେଜାଣି । ହାତରୁ ଚିଲ ପିଠାଟା ଝାମ୍ପିନେଲା । କହୁଛି — କଣନା ଭଗିଦାଦା ନେଇଗଲା ! ମୁଁ ସିନା ଭାଗ୍ୟକୁ ତାକୁ କହୁଛି କହିବାନାହିଁ । ନ ହେଲେ ତା' ବାପ-ମା ମତେ କ'ଣ କହି ଥାଆନ୍ତେ ।"

ମାଳତୀ ବୋଉ ପାଟି କରି କରି ଘର ଭିତରକୁ ଚାଲିଗଲେ । ମାଳତୀ ସେମିତି ଚିଲ ଆଡ଼େ ଅନାଇ ଠିଆ ହୋଇଥାଏ ।



# ଭଗି ମଦନକୁ ରାଜି କରାଇଲା :

ସେଦିନ ଭଗି ବରଗଛର ଦି'କେନିଆ ଡାଳରେ ଆରାମରେ ଶୋଇଥାଏ । ଆଖିମେଲି ଉପରଆଡ଼କୁ ଅନାଇ କ'ଣ ଭାବୁଥାଏ । ଦଶ ଦିନର ଦିନ ହବ ଗାଁରେ ଭାରି ହଇଚଇ ପଡ଼ିଚି । ଗାଁର ପାଞ୍ଚଜଣଙ୍କ ଘରୁ ଏ ଭିତରେ ଚୋରି ହୋଇ ଗଲଣି । ଚୋର ରାତିଅଧରେ ପଶୁଛନ୍ତି । ଟଙ୍କା, ସୁନା ବାସନକୁସନ ଯାହା ପାଉଛନ୍ତି, ସବୁ ନେଇ ପଳାଇ ଯାଉଛନ୍ତି । ଲୋକେ ଯେତେ ଜାକଡ଼ରବରେ ରହିଲେ ବି, ଚୋରକୁ ଧରିବା ତ ଦୂରର କଥା, ଚୋରର ଛାଇ ବି ଦେଖିପାରୁ ନାହାନ୍ତି ।

କାଲି ରାତିରେ ଭଗି ଘରେ ଚୋର ପଶିଥିଲେ । ତାର ନିଦ ଭାରି ପତଳା । ଖିଡ଼୍ ଖାଡ଼୍ ଶବ୍ଦ ଶୁଣି ନିଦଭାଙ୍ଗି ଗଲା । ସେ ଚୁପ୍-ଚାପ୍ ଉଠିବସିଲା । କଥାଟାକୁ ମନେ ମନେ ବୁଝିନେଲା । ତା'ପରେ କବାଟ-କଣରୁ ବାହାର କଲା ଲମ୍ବ ଶାବଳଟା । ଘରୁ ବାହାରି ବାଡ଼ି କବାଟ ଅଡ଼େଇ ଲୁଚିଗଲା । ଯାହା ସେ ଭାବିଥିଲା ଠିକ୍ ସେଇଆ ହେଲା । ବାଡ଼ି କବାଟ ଠିଆମେଲା ହେଉଚି । ଚୋରମାନେ ସେଇବାଟେ ଘରେ ପଶିଗଲେ । ବାଡ଼ିଆଡ଼େ ବଡ଼ ଆମ୍ବତୋଟା । ଆକାଶରେ ଟିକିଏ କାଳୀ ଜହ୍ନ ପଡ଼ିଚି । ଭସାବଉଦ ଭିତରେ ବେଳେ ବେଳେ ଲୁଚିଯାଉଚି । ବହଳ କଳା ଅନ୍ଧାର ଭିତରେ ତୋଟା ଲୁଚି ଯାଇଚି ।

ଭଗି ବାହାରପଟେ ଚୁପ୍‌ଚାପ୍ ଅପେକ୍ଷା କଲା । ହାତରେ ଶାବଳକୁ ବାଗେଇ ଧରିଥାଏ । କିଛିବେଳ ଗଲା । ଚାରିଟା କଳା କଳା ମୂର୍ତ୍ତି ବାହାରକୁ ଆସିଲେ । ଦି'ଜଣଙ୍କ ହାତରେ ଦି'ଟା ବସ୍ତା । ଭଗି ତ ଛପି ବସିଥିଲା । ପଛ ଲୋକଟାର ପେଣ୍ଡାକୁ ଲକ୍ଷ୍ୟକରି ପକାଇଲା ଶକ୍ତ ପାହାରେ ।

ଲୋକଟା 'ବାଘାଲୋ' ବୋଲି କହି ଗଛ କାଟିଲା ପରି ଚଢ଼ିଗଲା । ଭଗି ହାତରୁ ବି ଶାବଳଟା ଖସି ପଡ଼ିଲା । ଚୋରର ପାଟି ଶୁଣି ଆଗ ଚୋରଟା ପଛକୁ ଅନାଇଲା । ଦେଖିଲା ତା' ସାଙ୍ଗ ଚଢ଼ିଯାଇଚି । ସେ ଜମା ଡେରି କଲା ନାହିଁ । ସାଙ୍ଗକୁ କାନ୍ଧରେ ପକାଇ ଦୌଡ଼ିଲା । ଭଗି ବି ତାଙ୍କ ପଛରେ ଦୌଡ଼ିଲା । ତେବେ ଅନ୍ଧାରୁଆ ତୋଟା ଭିତରେ ସେମାନେ ଯେ, କୁଆଡ଼େ ଲୁଚିଗଲେ, ଭଗି ମୋଟେ ବୁଝିପାରିଲା ନାହିଁ ।

ତୋଟା ଆରପଟେ ଦୂରରେ ଭଙ୍ଗା ମନ୍ଦାରଗଡ଼ର ମାଟିକୁଦ । ବଣୁଆ ଗଛଲତାରେ ଭରପୂର । ଗଡ଼ ଭିତରେ ଏବେ ବି ଦି'ତିନି ବଖରା ଘରରହିଚି । ସାପ ଡରରେ କେହି କେବେ ସେଆଡ଼େ ଯାଆନ୍ତି ନାହିଁ । ଭଗି ଭାବୁଚି, ଚୋରମାନେ ନିଶ୍ଚେ ଗଡ଼ ଭିତରେ ଲୁଚି ରହିଛନ୍ତି । ଢନସାର ଆରାମରେ ସେଠି ଖିଆପିଆ ଶୁଆବସା କରୁଛନ୍ତି । ରାତି ହେଲେ ବାହାରକୁ ବାହାରୁଛନ୍ତି ।

ଭଗିର ଭାରି ଇଚ୍ଛା, ଥରେ ସେ ଗଡ଼ ଭିତରେ ପଶିବ । ଚାରିଆଡ଼ ଭଲକରି ଦେଖିବ । ଚୋର ସେଠି ଅଛନ୍ତି କି ନାହିଁ, ଜଣା ପଡ଼ିଯିବ । ସେ ଜାଣେ, ଏକା ଏକା ସେ ଏ କାମ କରିପାରିବ ନାହିଁ । ନିକୃଷ୍ଟରେ ଜଣେ ସାଥି ତା ପାଖରେ ଥିବା ଦରକାର । ତେବେ କଇଁଫୁଲିଆ ଗାଁର କେହି ହେଲେ ତା' ସାଥିରେ ବାହାରିବାର ଆଶା ନ ଥିଲା ।

ଗାଁ ଲୋକେ ଭାବୁଥିଲେ, ଗଡ଼ ଭିତରେ ଏବେ ବି ରାଜାଙ୍କର ଭୂତ ବୁଲୁଚି । କିଏ ସେଠିକି ଗଲେ, ସେ ତା'ର ବେକ ମୋଡ଼ିଦେବ । ରାତିଅଧରେ ସେଠୁ ଆଲୁଅ ବାହାରି ଗହୀରଆଡ଼େ ଯିବାର ଲୋକେ ଦେଖିଛନ୍ତି । ବେଳେ ବେଳେ ସେଆଡ଼ୁ ଭାରି ବିଚିକଣିଆ ଶବ୍ଦ ସବୁ ବି ଲୋକଙ୍କ କାନରେ ପଡ଼ିଚି ।

ଭଗି ଜାଣେ, କେହି ତ ଯିବେ ନାହିଁ; ଯଦି ଶୁଣନ୍ତି, ତେବେ ତାକୁ ବି ସେଆଡ଼େ ଯିବାକୁ ଦେବେ ନାହିଁ । ସେଇଥିପାଇଁ ସେ ସକାଳୁ ଚୁପ୍‌ଚାପ୍ ଏଠି ଶୋଇଛି—ଭାବୁଚି କଣ କରିବ ।

ହଠାତ୍ ତା' ଆଖି ମଦନ ଉପରେ ପଡ଼ିଲା । ମଦନ ବେଶ୍ ବଳୁଆ ଆଉ ସାହସୀ ଏ କଥା ସେ ଜାଣେ । ସେଦିନ ମାରଣା ଷଣ୍ଢଟା



ମାଳତୀକୁ ମାରିବାକୁ ଧାଇଁଥିଲା । ଏକା ମଦନ, ତା' ଲାଙ୍ଗୁଡ଼ ଟାଣିଧରି ତାକୁ ଅଟକାଇ ରଖିଲା । ମାଳତୀ ଦଉଡ଼ିଯାଇ ଘରେ ପଶିଗଲା ପରେ ଯାଇ ଛାଡ଼ିଲା ।

ମଦନକୁ ଯେମିତି ହେଲେ ରାଜି କରାଇବାକୁ ପଡ଼ିବ । ସେ ଯଦି ସାଙ୍ଗରେ ଯାଏ, ତେବେ ଆଉ ଡର କାହାକୁ ?

ଭଗି ମଦନକୁ ମନକଥା କହିଲା । ଗଡ଼ ଭିତରେ ଆଜି ପର୍ଯ୍ୟନ୍ତ ଏ ଗାଁ ଲୋକଙ୍କର ପାଦ ପଡ଼ିନାହିଁ । ତା' ଭିତରଟା ବୁଲି ଦେଖିବାପାଇଁ ମଦନର ମନ ଛଟପଟ କରୁଥିଲା । ଭଗିର କଥା ଶୁଣି ସେ ଖୁସିରେ ନାଚି ଉଠିଲା । ଏତେଦିନ ଯାଏ ସେ କେବେ ଗାଁ ବାହାରକୁ ଯାଇନାହିଁ । ଭଗି ତ ବର୍ଷକେ ଥରେ ଦି'ଥର ବାହାରକୁ ଯାଏ । କେତେ କଥା ଦେଖେ । ମଦନ ବାହାରକୁ ନ ଗଲେ ବି ଆଗ ଗଡ଼ଟା ଦେଖିନେବ । ତା'ପରେ ଆଉ ଟିକିଏ ବଡ଼ ହେଲେ, ବାହାରକୁ ଯେମିତି ହେଲେ ଯିବ ।

ମଦନ ଭଗି କଥାରେ ରାଜି ହୋଇଗଲା । ଭଗି କହିଲା—"ଏଥିରେ ବହୁତ ବିପଦ ଅଛି । ତୁ ଯେମିତି ଏକଥା କାହାକୁ ନ କହୁ ।"

ମଦନ କହିଲା—"ତମେ କଣ ପାଗଳ ହେଲ ? ଘରେ କହିଲେ ବୋଉ ଆଉ ମତେ ଛାଡ଼ିବ ! ଯେମିତି ହେଲେ ଚୁପ୍ ଚାପ୍ ଚାଲିଯିବାକୁ ପଡ଼ିବ । ତେବେ ଆଉ ଡେରି କରିବା ନାହିଁ । ଯିବାକଥା ଯଦି, ଶୀଘ୍ର ଯିବା ।"

ଭଗି କହିଲା—ହଁ, ଶୀଘ୍ର ଯିବା ।

ମଦନ ପଚାରିଲା—କେବେ, କେବେ ଯିବା ?

ଭଗି ଜବାବ୍ ଦେଲା—ଆଜି ରାତିରେ ।

ମଦନ ଖୁସି ହୋଇ କହିଲା—ଆଜି ରାତିରେ ?



## ସେଦିନ ରାତିରେ :

ରାତିଅଧିକୁ ବଳିପଡ଼ିବଣି ପରା । ଭଗି ଆଗେ ଆଗେ ଚାଲିଛି । ତା' ପଛେ ପଛେ ମଦନ । ଦି'ଜଣ ଯାକ ଦିଟା କାଳିଆ ଚାଦର ଘୋଡ଼େଇ ହେଇଛନ୍ତି । କିଛିବାଟ ଚୁପ୍‌ଚାପ୍ ଚାଲିବା ପରେ ଭଗି ପଚାରିଲା—ଆସିଲାବେଳେ କିଛି ଅସୁବିଧା ହୋଇନାହିଁ ତ ?

ମଦନ ଆସ୍ତେ ହସିଲା; କହିଲା—"ମା'ର ନିଦ ଭାରି ପତଳା । ଖସ୍‌କିନା ହେଲେ ସିଏ ଉଠି ବସେ । ମୁଁ ପଢ଼ିଲେ ତା' ନିଶ୍ୱାସ ବାରିଲି । ଜାଣିଲି; ସେ ଶୋଇ ପଡ଼ିଲାଣି । ବିଛଣାରୁ ଧୀରେ ଧୀରେ ଉଠିଲି । ଲମ୍ବା ମୁଚୁଳାଟିକୁ ଶୁଆଇ ଦେଲି । ଗୁଦରଟାଏ ଭଲ କରି ଘୋଡ଼ାଇଦେଇ, ବାହାରି ପଡ଼ିଲି । ରାତିରେ ବୁଢ଼ୀର ନିଦ ଭାଙ୍ଗିଲେ ବି ସେ ଜାଣିବ, ମୁଁ ଶୋଇଛି ।"

ଭଗି କହିଲା—ସାବାସ୍ ! ସକାଳ ଆଗରୁ ତ ଆମେ ଫେରି ଆସିବା । ଆଉ ଆମର ଡ଼ର କ'ଣ ?

ମଦନର ଗୋଡ଼ ହାଡ଼ତଳକୁ ଖସିପଡ଼ିଲା । ସେ ଭୁଷ୍‌କରି ପଡ଼ିଗଲା । ଭଗି ତାକୁ ଉଠାଉ ଉଠାଉ କହିଲା—ଦେଖିକରି ବାଟ ଚାଲୁନୁ ।

ମଦନ କହିଲା—କିଛି ହେଇନାହିଁ ମ । କେତେବେଳୁ ମୁଁ ତ ତମକୁ ଅନାଇ ବସିଚି । ତମର ଆସିବାକୁ ଏତେ ଡ଼େରିହେଲା କାହିଁକି ?

ଭଗି କହିଲା—ଆରେ ମୁଁ ଠିକ୍ ବାହାରିଲାବେଳକୁ କୋଉଠି ଥିଲା, କାଳିଆ କୁକୁରଟା ଭୋ ଭୋ କରି କମ୍ପେଇଲା । ଘରେ ସମସ୍ତେ ଉଠିଲେ । ଭୋକରୁ ପାଟି କରୁଚି ବୋଲି ତାକୁ ଖାଇବାକୁ ଦିଆଗଲା । ଏତିକିବେଳେ ଜେଜେଙ୍କ ଅଫିମ କଉଟରୁ ଟୋପାଏ ଅଫିମ ଆଣି ମୁଁ ତା'

ଖାଇବାରେ ମିଶାଇ ଦେଲି । ଖାଇସାରିଲାବେଳକୁ କାଳିଆର ଆଖି ଢୁଳୁ ଢୁଳୁ ହେଲାଣି । ଘରେ ସମସ୍ତେ ଶୋଇଲେ, ତା'ପରେ ମୁଁ ବାହାରିଲି । ତମ ଘର ପାଖରେ ପହଁଚ, ତିନଥର ପେଚ୍ଚ ଭଳି କୁହାଟ ମାରିଲି ।"

"ମୋର ତ ଅନେଇ ଅନେଇ ଆଖିରୁ ପାଣି ମରିଥିଲା ।" ମଦନ ଖୁଲୁ ଖୁଲୁ କହିଲା—ସେମିତି ପେଚ୍ଚ ରଡ଼ି ଶୁଣିଚି ସେମିତି ମୁଣିଟିକୁ କାଖରେ ଜାକି ଚାଲିଆସିଲି ।

ଆଗରୁ ଭଗି ମଦନକୁ ବୁଝାଇଥିଲା । ରାତିଅଧ ବେଳକୁ ସେ ନିଜେ ତିଆରି ହୋଇ ମଦନ ଘର ଆଡ଼କୁ ଯିବ । ପେଚ୍ଚ ଭଳି ତିନଥର 'ହୁଟ୍ ହୁଟ୍' ରଡ଼ି କରିବ । କେତେବେଳେ କ'ଣ ଦରକାର ପଡ଼ିବ । ଖଣ୍ଡିଏ ଲମ୍ବ ସରୁ ରସି ସାଙ୍ଗରେ ଧରିଥିବ । ଆଉ ଧାରୁଆ ଛୁରୀଟିଏ ବି ନେଇଥିବ । ସେଇକଥା ଭଗି ପଚାରିଲା, କହିଲା—"ସବୁ ଜିନଷ ଆଣିଚୁଟି ?"

ମଦନ କହିଲା—"ଛୁରୀଟାଏ ତ ମିଳିଲା । ହେଲେ ସରୁ ଦଉଡ଼ି ଖଣ୍ଡେ ଯୋଗାଡ଼ କରିବାକୁ ମୁଁ ନାକେଦମ୍ ହୋଇଚି । ଶେଷରେ କୁଆଡ଼ୁ କିଛି ପାଇଲି ନାହିଁ । ଆକାଶ ଦଉଡ଼ିଟା ଗୁଡ଼ାଗୁଡ଼ି ହୋଇ ଆମ୍ବ ଉପରେ ଥୁଆ ହୋଇଥିଲା । ସେଇଆକୁ ମୁଣିରେ ପୂରେଇଚି ।"

ଭଗି କହିଲା, "ଚାଲିବ । ଏଥର ଟିକିଏ ଗୋଡ଼ ଫୁର୍ତ୍ତି କର । ଗଦାଏ ବାଟ ଆଉରି ଅଛି ।"

ଦୁ'ଜଣଯାକ ଟୁପ୍‌ଟୁପ୍ ଚାଲିବାକୁ ଲାଗିଲେ । ହଠାତ୍ ଦମକାଏ ଥଣ୍ଡା ପବନ ବହିଆସିଲା । ଚାରିଆଡ଼ଯାକ ଘିଟିଘିଟିଆ ଅନ୍ଧାର । ଆକାଶରୁ ସେମିତି କଜଳ ବହିପଡ଼ୁଚି । ସେ କଜଳ ପୁଣି ଏତେ ବହଳିଆ ଯେ, ଛୁରୀରେ କାଟିବାକୁ ଗଲେ ବି ଛୁରୀ ଭୁଷିବ ନାହିଁ ।

ଉପର ଆଡ଼କୁ ଅନାଇ ଭଗି କହିଲା—"ଅଦିନିଆ ମେଘଟା କୁଆଡ଼ୁ ମାଡ଼ିଆସିଲାରେ । ବହୁତ ହଇରାଣ କରିବ । ଦେ, ତୁ ଚଞ୍ଚଳ ଚଞ୍ଚଳ ପାଦ ପକା । ଯାହା ଥିବ ଆମ କପାଳରେ ।"

ଦୁଇଜଣଯାକ ତରତର ହୋଇ ଚାଲିବାକୁ ଲାଗିଲେ । କିଛିକ୍ଷଣ ଗଲା । ଫୁସ୍ ଫୁସ୍ କରି ଭଗି କହିଲା—"ମନେ ହେଉଛି, ଆମେ ପାଖାପାଖି ଚାଲିଆସିଲେଣି । ଜଙ୍ଗଲ ଭିତରେ ସାପ ଝାପ ଥିବେ । ତୁ ମୋଟେ ଡ଼ରିବୁ ନାହିଁ । ମୋ ପାଖରେ ଗନ୍ଧକ ଅଛି । ମୁଁ ଖଣ୍ଡେ ଖଣ୍ଡେ ଆଗକୁ ପକାଇ ଦେଉଥିବି । ତାରି ଗନ୍ଧରେ ସାପ ବାଟ କାଟି ପଳେଇବେ ।"

ଏହା ଭିତରେ ସେମାନେ ଜଙ୍ଗଲ ପାଖକୁ ଚାଲି ଆସିଥିଲେ । ଅନ୍ଧାର ଭିତରେ ଗୋଟାଏ ବଡ଼ କଳାପାହାଡ଼ ଭଳି ମନ୍ଦାରଗଡ଼ ଠିଆ ହୋଇଛି । ଚାରିଆଡ଼ଯାକ ଘେରିଛି—ବଡ଼ ବଡ ଗଛ । ମାଟି ଉପରେ ଛୋଟ ଛୋଟ କଣ୍ଟାବୁଦା—ବଣୁଆଲଟା ବି କେତେ ମାଡିଛି ।

ଭଗି ଶୁଣିଛି, ଆଗେ କୁଆଡ଼େ ଗଡ଼ ଚାରିପାଖ ଘେରି ଗଡ଼-ଖାଇଥିଲା । ସେଥିରେ ଅକାତକାତ ପାଣି । ମନ୍ଦାକୁଆ ନଈରୁ ସେଥିକି ପାଣି ଆସୁଥିଲା । ରାଜା କୁମ୍ଭୀର, ଶାଙ୍କୁଚ ଆଦି ଆଣି ସେଥିରେ ଛାଡ଼ିଥିଲେ । ଦୁଇଆଡ଼କୁ ଥିଲା ସିଂହ ଦୁଆର । ଖାଇ ଉପରେ କାଠର ଉଠାପୋଲ ଥିଲା । କପିକଳ ଲଗାଇ ସବୁଦିନ ରାତିରେ ସେ ପୋଲକୁ ଉଠାଇ ନିଆଯାଉଥିଲା ।

ଠିକ୍ ଖାଇ ଉପରକୁ ଥିଲା ଚଉଡ଼ା ପାଚେରି । ମଝିରେ ମଝିରେ ଜଗୁଆଳିମାନଙ୍କ ପାଇଁ ଘର ତିଆରି ହୋଇଥିଲା । ତାରି ଉପରେ ଦିନରାତି ଚବିଶଘଣ୍ଟା ପହରାଦାରମାନେ ପହରା ଦେଉଥିଲେ । ଦୂରବୀନ୍ ଲଗାଇ ବହୁଦୂର ଯାଏ ଦେଖୁଥିଲେ । ଗଡ଼ ମଝିରେ ସାତପରସ୍ତ ଘର ଥିଲା । ସେଥିରେ ରାଜା ଆଉ ତାଙ୍କର ପରିବାର ରହୁଥିଲେ । ସୈନ୍ୟ-ସାମନ୍ତ ପାତ୍ରମନ୍ତ୍ରୀଙ୍କ ପାଇଁ ଅଲଗା ଅଲଗା ଘର ଥିଲା । ଗଡ଼ ଭିତରେ ଲୋକଙ୍କ ପାଇଁ ଛମାସ ଲାଗି ଖାଇବାଦରବ ଠୁଳକରି ରଖାଯାଉଥିଲା । କେଜାଣି କାଳେ ଶତ୍ରୁଗଡ଼ ଘେରାଉ କରିବ—ସେଇଥିପାଇଁ ଏ ବ୍ୟବସ୍ଥା କରାଯାଇଥିଲା ।

ଗଡ଼ ମଝିରେ ଥିଲା ଗଡ଼ଚଣ୍ଡୀ ଠାକୁରାଣୀଙ୍କ ମନ୍ଦିର । ଯୁଦ୍ଧରେ ବାହାରିବା ଆଗରୁ ରାଜା ନିଜେ ଚଣ୍ଡୀଙ୍କୁ ପୂଜା କରୁଥିଲେ । ପୂଜା

ଶେଷରେ ଚଣ୍ଡୀଙ୍କ ହାତରୁ ଫୁଲ ଖସୁଥିଲେ, ଯୁଦ୍ଧରେ ଜୟ ହେବ ବୋଲି ଜଣାଯାଉଥିଲା । ମନ୍ଦିର ଆଗରେ ନର୍ମଦାଘାଟି । କଳାଘୁମର ପାଣି ସତେ ଯେମିତି ପାତାଳରୁ ବାହାରିଛି । ଯେମିତି ଶୀତଳ ସେମିତି ସଫା । ରାଜାଘରର ଝିଅବୋହୂମାନେ ଏଇ ଘାଟିରେ ଗାଧୁଆ ପାଧୁଆ କରୁଥିଲେ ।

ବାଟ ଚାଲୁ ଚାଲୁ ଭଗି ଏଇସବୁ ଭାବୁଥିଲା । ସେ ଶୁଣିଚି, ନର୍ମଦା ଘାଟି ଉପରେ ଧାଉଡ଼ିଏ ପକ୍କା ଘର ଥିଲା । ଅତିଥି ଅଭ୍ୟାଗତ, ସାଧୁ, ସନ୍ଥ ଆସିଲେ, ସେଇ ଘରେ ରହୁଥିଲେ । ସେଇ ଘର ଭିତରୁ କେଇବଖରା ଆଜଯାଏ ବି ଠିଆ ହୋଇଚି । ଭଗିର ମନେହେଲା ଚୋରମାନେ ଯଦି ରହୁଥାଆନ୍ତି, ତେବେ ସେଇଠି ଥିବେ ।

ମଦନ ଅନେକବେଳରୁ ଚୁପ୍ ଥିଲା । ତା'ର ଗୋଟିଏ କଥା ମନେ ପଡ଼ିଗଲା । ସେ ଫୁସ୍ ଫୁସ୍ କରି ଭଗିକୁ କହିଲା—ଭଗିଦାଦା ! ତମେ ଜାଣିଚ, ମନ୍ଦିର ପଛପଟେ କୋଉଠି ଗୋଟାଏ ସୁଡ଼ଙ୍ଗ ଅଛି । ମା କହୁଥିଲା, ଆଗେ କୁଆଡ଼େ ସେଇବାଟ ଦେଇ ରାଣୀ ନଈକୁ ଗାଧୋଇ ଯାଉଥିଲେ । ପୁଣି ମାଟିତଳ ରାସ୍ତାରେ ଫେରିଆସି ଠାକୁରାଣୀଙ୍କୁ ଦର୍ଶନ କରି ରାଜବାଟୀକୁ ଫେରି ଯାଉଥିଲେ ।

ଭଗିର ମନେ ପଡ଼ିଗଲା । ତା' ବୁଢ଼ାବାପା ବି ତାକୁ କେତେଥର ଏଇକଥା କହିଚି । ତେବେ ଏ ଭିତରେ କେତେଦିନ ତ ବିତିଗଲାଣି । ମାଟିତଳ ରାସ୍ତା ଅଛି କି ନାହିଁ କିଏ ଜାଣେ ।

ଏତେବେଳକୁ ଟପ ଟପ କରି ମେଘ ପକାଇବାକୁ ଆରମ୍ଭ କଲା । ବିଚରା ପିଲା ଦି'ଜଣ କଣ ଆଉ କରିବେ । ଗଛଲତା ଭିତରେ ବାଟ ଖୋଜି ଖୋଜି ଆଗେଇ ଥାଆନ୍ତି । ଟୋପା ଟୋପା ପାଣିରେ ଦେହମୁଣ୍ଡ ଓଦା ହୋଇ ଯାଉଥାଏ । ଶୀତୁଆ ପବନ ଦେହରେ ବାଜି ରୁମ ଟାଙ୍କୁରି ଉଠୁଥାଏ । ଅନ୍ଧାରରେ ଗୋଡ଼ ଏଠି ବୋଲି ସେଠି ପଡ଼ୁଥାଏ । ତଥାପି ଦି'ଜଣଯାକ ଆଗେଇ ଥାଆନ୍ତି ।

ହଠାତ୍ ମଦନର କାନ୍ଧରେ ଝୁଲୁଥିବା ମୁଣି ଭିତରୁ କଣ ଗୋଟାଏ ଖସ୍ ଖସ୍ ଶବ୍ଦ ହେଲା । ମଦନ ମୁଣିକୁ ସମ୍ଭାଳୁ ସମ୍ଭାଳୁ ତା' ଭିତରୁ ଶୁଣାଗଲା "ଚିଁଇଇ" "ଚିଁଇଇ" ।

ଭଗି ପଚାରିଲା—'କରେ !'

ମଦନ ଟିକିଏ ହଡ଼ବଡ଼େଇ ଗଲା । କିଛିବେଳ ଯାଏ ଚୁପ୍ ରହିବା ପରେ କହିଲା—"ଦାଦ ! ମୁଁ ତମକୁ କହିବାକୁ ଭୁଲିଯାଇଚି । ମଉଜରାମ୍‌କୁ କାହା ପାଖରେ ଛାଡ଼ି ଆସି ଥାଆନ୍ତି ? ତମେ ତ ଜାଣ, ମୋ ପାଖରେ ନ ଶୋଇଲେ ତାକୁ ନିଦ ହୁଏ ନାହିଁ । ଏଣେ ମାଳୀଟାର ବି ତା' ଉପରେ ଭାରି ରାଗ । ବେଳ ଦେଖି ତାକୁ ଦୁମ୍ ଭୁସ୍ ଚଢ଼ାଏ । ପୁଣି ଆମେ ଯେତେବେଳେ ବାହାରକୁ ଆସୁଚୁ, ବଣ ଜଙ୍ଗଲ କଥା । ଦରକାର ହେଲେ ମଉଜା ଆମର କାମରେ ଲାଗିପାରେ ତ । ଏଇସବୁ ଭାବି, ମୁଁ ଆଜି ତାକୁ ଘରେ ଛାଡ଼ିଦେଇ ଆସିପାରିଲି ନାଇଁ ।"

ଭଗି ଖାଲି କହିଲା—"ହଁ, ବୁଝିଲି ।'

ମଦନ ଯାହାକୁ ମଉଜ ବୋଲି କହିଲା—ସେ ହେଉଚି ନେଉଳଟିଏ । ଧୂସର ରଙ୍ଗ, ନରମରୁମ୍, ନାଲି ଓଠ ଆଉ ଚିରଙ୍ଗ ଚିରଙ୍ଗ ଶୁଙ୍ଘାଣିର ବେଶ୍ ମୋଟା ସୋଟା ଜନ୍ତୁ । ମଦନର ଭାରି ହିତାଇଷୀ । ଦିନରାତି ଚବିଶଘଣ୍ଟା ତା'ର ପାଖେ ପାଖେ ଥାଏ । ମଦନ ତାକୁ ହାତରେ ଖୁଆଏ ପିଆଏ । ଗାଧୋଇ ସଫାସୁତୁରା କରିଦିଏ । ଗୋଟାଏ ଭଙ୍ଗା ପାନିଆଁ ଯୋଗାଡ଼ କରିଚି । ବେଳେ ବେଳେ ସେଥିରେ ନେଉଳର ଦେହ କୁଣ୍ଡାଇ ଦିଏ ।

ନେଉଳ ପିଲା ପୁଣି ଭାରି ସଉକୀ ଆଉ ଗେଲବସର । ଦୁଧଭାତ ସାଙ୍ଗକୁ ମାଛଟିକେ କି ଶୁଖୁଆପୋଡ଼ା ମେଞ୍ଚାଏ ନ ହେଲେ ତା' ପେଟକୁ ଆହାର ଯାଏ ନାହିଁ । ମଦନର ଗୋଟାଏ ବଡ଼ କାମ ହଉଚି, ତା' ପାଇଁ ସବୁଦିନେ ଆଇଁଷ ଯୋଗାଡ଼ କରିବା । ବନ୍ଶୀରେ ହଉ କି ଖାଲି ବୋହି କରି ହେଉ, ଯେମିତି ହେଲେ ମୁଠାଏ ମହୁରଡ଼ି କି ଜହ୍ନା ମଉଜା ପାଇଁ ଯୋଗାଡ଼ କରିବାକୁ ପଡ଼େ ।

ମଦନ ତା' ବେକରେ ଗୋଟାଏ ଘୁଂଗୁର ବାନ୍ଧି ଦେଇଚି । ନୁସୁ ରୁ ପୁସୁ ରୁ ହୋଇ ଦଉଡ଼ୁଥିଲା ବେଳେ; ଟୁଂ ଟାଂ ଶବ୍ଦ ଆସୁଥାଏ । ଏମିତିରେ ଭିତରପାଖ ବାରଣ୍ଡା କଣରେ ତା' ପାଇଁ ଗୋଟାଏ

ନଳୀ ମାଠିଆ ପୋତା ହୋଇଛି । ମଦନ ପୁଣି ତା' ଭିତରେ ନରମ କୁଟାପାଳ, ଅଖା ଘୋଡ଼ାଇ ଭଲ ବିଛଣାଟିଏ କରିଦେଇଛି । ହେଲେ; ମଉଜାର ତା' ମୋଟେ ପସନ୍ଦ ନୁହେଁ । ପ୍ରଥମ ଦିନ ମଦନ ବହୁତ ଆଉଁସା ପାଉଁସା କରି ମଉଜାକୁ ମାଠିଆ ଭିତରେ ଛାଡ଼ିଦେଲା । ଆପେ ଆସି ନିଜ ବିଛଣାରେ ଶୋଇଲା । ରାତିଅଧକୁ ତା' ନିଦ ଭାଙ୍ଗିଗଲା । କବାଟକୁ କିଏ ଯେମିତି ନଖରେ ରାମ୍ପୁଡୁଛି । ମଦନ ଡରି ଡରି କବାଟ ଫିଟାଇଲାବେଳକୁ ମଉଜା ଖପ୍ କରି ଘର ଭିତରକୁ ଡେଇଁ ପଡ଼ିଲା । ସିଧା ମଦନର ଶେଯ ଉପରକୁ ଚାଲିଗଲା । ସେଇଦିନଠୁଁ ମଉଜ ସବୁଦିନେ ମଦନର ଶୋଇବା ଶେଯର ଭାଗୀଦାର । ମଦନ ବି ତାକୁ ଆଉ ମାଠିଆ ଭିତରକୁ ଛାଡ଼େ ନାଇଁ ।

ଖାଲି କ'ଣ ସେମିତି । ମଦନ ଯୁଆଡ଼େ ଯାଏ, ମଉଜା ତା' କାନ୍ଧରେ ସବାର୍ ହୋଇଯାଏ । ନ ହେଲେ; ତା' ପଛେ ପଛେ ଧାଇଁଥାଏ । କାଳେ କୁକୁର ମାଡ଼ିବସିବେ, ଏଇ ଭୟରେ ମଦନ ବି ତାକୁ ପାଖଛଡ଼ା କରେ ନାହିଁ ।

ନେଉଳ ପିଲଟା ନାତିର କାନ୍ଧରେ ପିଠିରେ ଝୁଲୁଥିବାର ଦେଖିଲେ, ମଦନର ଜେଜେମା ବୁଢ଼ୀ ଭାରି ଖପା ହୁଅନ୍ତି । ଥରେ ଦି'ଥର ଛାଞ୍ଚୁଣୀମାରି ତାକୁ ଦୁର୍ଦୁର୍ କରି ତଡ଼ିଥିଲେ । ଦେଖାଗଲା, ସେଥିରେ ବିପଦ ବେଶୀ । ନେଉଳ ଉପରେ ମାଡ଼ ପଡ଼ିଲେ ମଦନ ଖିଆପିଆ ବନ୍ଦ କରିଦିଏ । ଚୁପ୍ ଚାପ୍ ମଉଜାକୁ ନେଇ କୁଆଡ଼େ ଚାଲିଯାଏ । ଶେଷରେ ବହୁ କଷ୍ଟରେ ତା' ହାତ ଓଠ ଧରି ଠାକୁରାଣୀ ବରତଳୁ, କି ତୋଟାମଝିରୁ ତାକୁ ଘରକୁ ଫେରାଇ ଅଣାଯାଏ । ନେଉଳକୁ କେହି କିଛି କହିବେ ନାହିଁ—ସମସ୍ତଙ୍କୁ ଏଇଭଳି ପ୍ରତିଜ୍ଞା କରାଇ ନେଇ ପାରିବା ପରେ ମଦନ ଅନଶନ ଭାଙ୍ଗେ । ବୁଢ଼ୀଙ୍କୁ ଧମକ୍ ଦେଇ କହେ, ତୁ ପୁଣି ମଉଜା ସାଙ୍ଗରେ ଲାଗିଲେ, ମୁଁ ତାକୁ ନେଇ ଘର ଛାଡ଼ି ଚାଲିଯିବି । ବୁଢ଼ୀ ଛନିଆଁ ହୋଇ ଯାଆନ୍ତି । ଗୋଟିଏ ବୋଲି ନାତି । ସତକୁ ସତ ଯେବେ ଘର ଛାଡ଼ି ପଳାଇଲା; ତେବେ ଏ ଘରଦ୍ୱାର କ'ଣ ହେବ ? ବୁଢ଼ୀ ମନେ ମନେ ରାଗରେ ପାଚିଗଲେ ବି ଉପରେ ଆଉ ନେଉଳକୁ କିଛି କହନ୍ତି ନାହିଁ ।

ମଉକା ଖୋଜନ୍ତି, କେତେବେଳେ ମଦନ ଘରେ ନାହିଁ, ଏଣେ ସବୁଖ-ନାଶିଆ ନେଉଳଟା ଅଛି । ମଉକା ପାଇଲେ, ବୁଢ଼ୀ ନିଜ ମୂର୍ତ୍ତି ଧରନ୍ତି । ପାଟିକରି କହନ୍ତି ନିଆଁନଗା, ପୋଡ଼ାମୂହାଁ ବାହାର, ବାହାର ମୋ ଘରୁ । ସେତେବେଳେ ମାଳୀକୁ ଦାଣ୍ଡରେ ଠିଆ କରି ଥାଆନ୍ତି । ମାଳୀ ତାଙ୍କର ଚର । ମଦନକୁ ଦୂରରୁ ଦେଖିଲେ, ତେଜଙ୍କୁ ସାବଧାନ କରିଦେବ । ଖବର ପାଇଗଲେ ବୁଢ଼ୀ ଚୁପ୍ ହୋଇ ଯାଆନ୍ତି ।

ମାଳୀକୁ ଏଭଳି ଘଟଣାରେ ବେଶ୍ ମଜା ଲାଗେ । ସେ ବେଳେ ବେଳେ ମଜା ଦେଖିବାପାଇଁ ମିଛରେ କହିଦିଏ, "ମାଲୋ ! ଭାଇ ଆଇଲାଣି ।" ବୁଢ଼ୀଙ୍କ ଅବସ୍ଥା ଦେଖି ତାକୁ ଭାରି ହସ ମାଡ଼େ । ବୁଢ଼ୀ ସବୁକଥା ବୁଝିପାରି, ତାକୁ ଦି'ଗୁଣ୍ଡା ବସାଇ ଦିଅନ୍ତି ।

ନେଉଳ ସାଙ୍ଗରେ ମାଳୀର ବି ଭଲ ପଡ଼ୁ ନାହିଁ । ସେ ଘରକୁ ଆସିବାଦିନୁଁ ମାଳୀର ଦୁଧ, ଛେନା, ମାଛ ଶୁଖୁଆରେ ଭାଗ ବସାଉଛି, ସେଥିପାଇଁ ମାଳୀର ମନ ଭଲ ନ ଥିଲା । ମାଳୀର ପୋଷା ବିଲେଇ ଛଟକା ଆଉ ମଉଜୀରାମ ଭିତରେ ଦିନେ ଘମାଘୋଟ ଲଢ଼େଇ ଲାଗିଲା । ଦୋଷ ଅବଶ୍ୟ ଛଟକାର । ମଉଜୀ ଅମାରଚଳୁ ଗୋଟିଏ ମୂଷା ଧରି, ତା' ସହିତ ଖେଳୁଥିଲାବେଳେ ସେଠି ଆସି ପହଞ୍ଚିଲା ଛଟକା । ମୋଟା ସୋଟା ମୂଷାକୁ ଦେଖି ତାର ଲୋଭ ପ୍ରବଳ ହୋଇ ଉଠିଲା । ସେ ମଉଜୀଠୁ ମୂଷାପିଲାକୁ ଛଡେଇ ନବାକୁ ଚାହିଁଲା । ତା'ପରେ ତ ଲାଗିଲା ଯୁଦ୍ଧ ।

ରାଗରେ ଦିହ ଫୁଲେଇ ମଉଜୀ ବିଲେଇ ଉପରକୁ ଡେଇଁ ପଡ଼ିଲା । ଦାନ୍ତରେ ଆଉ ନଖରେ ଛଟକାକୁ ରାମ୍ପୁଡ଼ି କାମୁଡ଼ି ତାକୁ ନହୁଲୁହାଣ କରି ପକେଇଲା । ବିଲେଇ ବି କିଛି କମ୍ ନୁହେଁ । ସେ ପ୍ରାଣପଣେ ଲଢ଼ିଲା । ବିଲେଇ ଆଉ ନେଉଳର ଲଢ଼େଇ ଚାଲିଥିଲା-ବେଳେ ମାଳଣି ସେଠି ପହଞ୍ଚିଗଲା । ମଦନ ତ ମୂଳରୁ ସେଠି ଠିଆ ହୋଇଥିଲା ।

ଦୁଇପକ୍ଷ ନିଜ ନିଜର ପକ୍ଷକୁ ଟିହାଇବାକୁ ଲାଗିଲେ । ମାଳତୀ କହୁଥାଏ, "ଗୋଡ଼ାମୁହାଁକୁ ମୋଟେ ଛାଡ଼ିବୁ ନାହିଁ ଛଟକା । ତା' ସବୁଆ ଥୋମଣି ଛିଣ୍ଡେଇଦେ । ତା' ଆଖି ଫୁଟେଇଦେ । ତତେ ଆଜି ଦି'ଖଣ୍ଡ ମାଛଭଜା ଦେବି ।

ମଦନ ବି ଚୁପ୍ ରହି ନ ଥାଏ । ସେ ବି ପାଟି କରୁଥାଏ "ମଉଜୀ ! ଛଟକାର ତଣ୍ଟି କଣା କରିଦେ । ଦେଖିବୁ, କଏ ତା'ର ପିଠିରେ ପଡ଼ିବ ।'



ମଉଜୀ ସାଙ୍ଗରେ ଲଢ଼ି ଲଢ଼ି ବଲେଇଟା ହାଲିଆ ହୋଇ ପଡ଼ିଲା । ମାଳତୀ ଆଉ ସମ୍ଭାଳି ହୋଇ ରହିପାରିଲା ନାହିଁ । ବଲେଇକୁ ଉଦ୍ଧାର କରିବାକୁ ସେ ନିଜେ ଲଢ଼େଇ ଜାଗାକୁ ଚାଲିଗଲା । ବଲେଇକୁ ନେଇ ଆସିବାବେଳକୁ, ମଉଜୀର ପାଟିପାଖରେ ପଡ଼ିଗଲା ତା'ର ଗୋଟିଏ ଆଙ୍ଗୁଠି ! ମଉଜୀ ରଟକିନା କାମୁଡ଼ି ଦେଲା ।

ବଲେଇ ଆଉ ନେଉଳର ଲଢ଼େଇ ସିନା ଏଇଠି ବନ୍ଦ ହେଲା । ଏଣେ ମାଳତୀର ହାଉ ହାଉ କାନ୍ଦ ଶୁଣି ଘରଯାକର ଲୋକ ଗଦା ହୋଇ

ପଡ଼ିଲେ । ସମସ୍ତେ ମଦନକୁ କାଇଜା କଲେ । ମଦନକୁ ବି ଦୋଷୀ ଦୋଷୀ ଲାଗୁଥାଏ ।

ମାଳୀର ଘା ତ ଦୁଇ ଚାରି ଦିନରେ ଶୁଖିଗଲା । ତେବେ ସେଇ ଦିନଠୁଁ ସେ ଆଉ ନେଉଳଟାକୁ ଦି'ଆଖିରେ ଦେଖିପାରେ ନାହିଁ । ମିଛରେ ସଚରେ ଲଗାଇ ନେଉଳ ନାଁରେ ନାନା କଥା କହେ । ବିଶେଷ କରି ଜେଜେମାଙ୍କୁ କୁହେ, "ପୋଡ଼ାମୁହଁଟା ମରିଯାଆନ୍ତା ହେଲେ ।"

ଏ ସବୁ କଥା ଭଗି ଜାଣେ । ଗାଁରେ ସମସ୍ତେ ଜାଣନ୍ତି । ସେଇଥି ସକାଶେ ସେ ଆଉ ମଦନକୁ କିଛି କହିପାରିଲା ନାହିଁ । କାହା ପାଖରେ ସେ ବିଚରା ମଉଜାକୁ ଗୁହାରି ଆସି ଥାଆନ୍ତା ? ଦିନେ ଭଗି ନିଜେ ଦରମଲା ନେଉଳ ଛୁଆକୁ ମଦନ ହାତରେ ଦେଇଥିଲା । ଆଜି ସେଦିନର କଥା ଭଗିର ମନେ ପଡ଼ିଗଲା ।



# ଜଙ୍ଗଲ ବାଟରେ ଦୁଇସାଙ୍ଗ

ଦିନ ଦିପହର ହେବ ପରା । ମଦନ ଆଜ ଭଗି—ଠାକୁରାଣୀ ବରମୂଳେ ଶୋଇ ଗପସପ କରୁଥିଲେ । ବେଡ଼ା ପଛପଟକୁ କଥାବୁଦାର । ଏ ଜଙ୍ଗଲ । ସେଇଆଡ଼ୁ ହଠାତ୍ ପଲେ କାଉ ଏକାଥରକେ ବୋବାଇ ଉଠିଲେ । ଭଗି ମନଦେଇ କିଛି ବେଳଯାଏ କାଉଙ୍କର ରାଡ଼ି ଶୁଣିଲ । ତା'ପରେ କହିଲ—ମଦନା ! ଚାଲିଲୁ ଦେଖିବା । ସେପଟେ କଣ ହେଇଚ ।

ଦି'ଜଣଯାକ ଉଠି ବେଡ଼ାପଛକୁ ଗଲେ । ଗୋଟିଏ ଜାଗାରେ କାଉପଲ କାହା ଉପରେ ଝାମ୍ପି ପଡ଼ୁଥାଆନ୍ତି । ଥଣ୍ଟରେ ଖୁମ୍ପୁ ଥାଆନ୍ତି । ଏମାନଙ୍କୁ ଦେଖି କାଉ ଉଡ଼ିଗଲେ । ଦେଖାଗଲ ମୂଷା ଛୁଆ ଭଳି କଣଟିଏ ଦରମଲ ହୋଇ ପଡ଼ିଚ । ପାଖକୁ ଯାଇଁ ଦେଖିଲବେଳକୁ ନେଉଳ ଛୁଆଟିଏ । ଭଗି ତାକୁ ହାତରେ ଉଠାଇ ପରୀକ୍ଷା କଲ । ଜାଣିଲ, ବଞ୍ଚିଯିବ । ମଦନକୁ ବଢ଼ାଇଦେଇ କହିଲ—"ନେ ! ଧୁଆଧୋଇ କରି ଗାନ୍ଧକ୍ଷୀର ଲଗେଇଦବୁ । ଭୁଲାରେ ଦୁଧ ଟିକଏ ଟିକଏ ଦବୁ । ବଞ୍ଚିଯିବ ।"

ସେଇ ନେଉଳଛୁଆ । ଏବେ ମଉଜାରାମ ହୋଇଛି । ଭଗି କହିଲ ଆଣିଚୁ ଯଦି, ଗୋଟାଏ କଥା କର । ତାକୁ ବାହାରେ ଗୁଡ଼ିଦେ । ଦଉଡ଼ିଟାକୁ ହାତରେ ଧରିଥା । ବଣ ଜଙ୍ଗଲ ଜାଗା । ସାପ ଫାପ ଦେଖିଲେ, ଆମକୁ ସାବଧାନ କରିଦେବ ।

ମଉଜାରାମ ଗୋଟାଏ କାମରେ ଲଗିବ । ମଦନ ଭାରି ଖୁସି । ସେ ସାଙ୍ଗେ ସାଙ୍ଗେ ନେଉଳକୁ ମୁଣି ଭିତରୁ ବାହାର କରି ବାହାରେ

ଛାଡ଼ିଦେଲା । ତା' ବେକର ଘୁଂଗୁର ଝୁଂ ଝାଂ ହୋଇ ବାଜି ଉଠିଲା । ଭଗି ବିରକ୍ତ ହେଲା । କହିଲା—କାଢ଼୍, ଆଗ ସେ ଘୁଂଗୁରକୁ ତା' ବେକରୁ କାଢ଼ । ନ ହେଲେ, ଆମେ ଚୋରକୁ ଧରିବା ଆଗରୁ ଚୋର ହାତରେ ଧରାପଡ଼ି ଯାଉଥିବା ।”

ମଦନକୁ ଭାରି ଲାଜ ଲାଗିଲା । ଦାଦା ତ ସତକଥା କହୁଛି । ସେ ଯାଙ୍ଗେ ଯାଙ୍ଗେ ମଉଜାକୁ ଧରି ତା' ବେକରୁ ଘୁଂଗୁରଟା କାଢ଼ି ମୁଣିରେ ପକାଇଲା । ମୁଣି ଭିତରୁ ବାହାରି ମଉଜା ବେଶ୍ ଖୁସି । ଆଗେ ଆଗେ ହେଇଁ ହେଇଁ ଚାଲୁଥାଏ ।

ଦାଦା ପୁତୁରା ଦହେଁ ଚୁପ୍ ଚୁପ୍ କରି ବାଟ ଚାଲିଲେ । ଅସମା ଜଙ୍ଗଲିଆ ବାଟ । କେତେଦିନରୁ ମଣିଷର ପାଦ ପଡ଼ିନାହିଁ । କଣ୍ଟାଝଣ୍ଟା ଘଣଘଣ । ତା' ସାଙ୍ଗକୁ ଅନ୍ଧାର ଆଉ ବର୍ଷା ।

ଗଛ ପତରରୁ ଟପ୍ ଟପ୍ ହୋଇ ପାଣି ପଡ଼ୁଛି । ଦୁ'ଜଣଯାକ ପୂରା ଓଦା ହୋଇଗଲେଣି । ଏଣେ ଚଳମାଟି ଚକଟା । ଟିକିଏ ଅସାବଧାନ ହେଲେ ଗୋଡ଼ ଖସିବ । ପାଦ ଚପି ଚପି ସେମାନେ ଧୀରେ ଧୀରେ ଆଗୋଉଛନ୍ତି । ଘଡ଼ି କେତେ ହେବ କେଜାଣି ?

ସାରା ଜଙ୍ଗଲ ନିଶୁନ୍ । ଶୁଣାଯାଉଛି ପବନର ସାଇଁ ସାଇଁ ଶବ୍ଦ ସାଙ୍ଗକୁ ବର୍ଷାର ଝର ଝର ନାଦ । ଶହ ଶହ ଝିଙ୍କାରି ଏକାସାଙ୍ଗରେ ଡାକି ଚାଲିଛନ୍ତି । ଗଛ ପତରରେ ଜଳୁଛି ଅସୁମାରି ଜୁଳୁଜୁଳିଆ ବତି ।

ଗଛ ତଳେ ଜମା ହୋଇଛି କେଉଁକାଳର ଶୁଖିଲା ପତର । ଏ ଦୁହିଁଙ୍କ ପାଦପଡ଼ି ମଡ଼୍ ମାଡ଼୍ ହୋଇ ଭାଙ୍ଗି ଯାଉଛି । ତଥାପି ସେମାନେ ଚାଲିଛନ୍ତି ।

ଦୂରରେ କୋଉଠି ଗୋଟାଏ ପେଚା ବୋବାଇ ଉଠିଲା । କିଛିବେଳ ପରେ ଟିକିଏ ଦୂରରୁ ତାକୁ ଜବାବ ଦେଲା—ଆଉ ଗୋଟିଏ ପେଚା । ଦୁ'ଜଣଯାକ ଏ ସବୁ ଶୁଣି ଶୁଣି ଆଗୋଉ ଥାଆନ୍ତି ।

ହଠାତ୍ ସେଇ ନଶୂନ୍ ଜଙ୍ଗଲ କାହାର ଚଳାରରେ ଭରିଗଲା । କିଏ ଯେମିତି ଭାରି କଷ୍ଟରେ କୁହୁଳାଉଛି । ପିଲାଲୋକ କଣ୍ଠ । ଏତେ ରାତିରେ ଏ ଝାଡ଼ଜଙ୍ଗଲ ଭିତରେ ମଣିଷ ପିଲା କୁଆଡ଼ୁ ଆସିବ ?

ମଦନର ଛାତି ଦମ୍‌ଦମ୍ ପଡ଼ୁଥାଏ । ସେ ଫୁସ୍‌ଫୁସ୍ କରି ଡାକିଲା ଦାଦା । ଭଗିଦାଦା । ଭଗି ମଦନର ମନ କଥା ବୁଝି ପାରିଲା । ତା' ପାଖକୁ ଆସି କାନରେ ହାତରଖିଲା । କହିଲା—'ଡ଼ରିଲୁ କିରେ ? ମୁଁ ଜାଣିଛି, ଏଏ ମଣିଷ ପିଲାର କାନ୍ଦଣା ନୁହେଁ । ଶାଗୁଣା ଛୁଆ ଚୋବୋଉଛି । ମୁଁ ଆଗରୁ ବି କେତେଥର ଏମିତି ଶୁଣିଛି ।"

ମଦନର ମନ ବୁଝିଲା ନାହିଁ । ଦାଦା ଖାଲି ତାକୁ ବୁଝାଇବାକୁ ଏମିତି କହୁଛି । ନହେଲେ—ଶାଗୁଣା କଣ ସେ ଦେଖିନାହିଁ ? ତାର ବୋବାଇବା ଶୁଣିନାହିଁ ? ଭଗି ବୁଝିଲା ମଦନର ତା' କଥାରେ ବିଶ୍ୱାସ ଆସୁନାହିଁ । ସେ କହିଲା, 'ରହ । ତତେ ଏଇନେ ଦେଖେଇଦଉଛି ।' ଏତିକି କହି ସେ ନିଜ ମୁଣିରୁ ଝିକମିକପଥର କାଢିଲା । ପଥରକୁ ପଥରରେ ଘଷି ସୋଲରେ ନିଆଁ ଧରେଇଲା ।

ମୁଣିରୁ ବାହାର କଲା ଗୋଟିଏ ସାନମଶାଲ । ସୋଲ ନିଆଁରେ ମଶାଲ ଧରାଇ ହାତରେ ଧରିଲା । ମଦନକୁ କହିଲା—ଆ ମୋ ପାଖରେ । ଦୁ'ଜଣ ପାକ ଯୁଆଡ଼ୁ ରବ ଶୁଣାଯାଉଥିଲା, ସିଆଡ଼େ ଚାଲିଲେ । ବେଶୀ ବାଟ ଯିବାକୁ ପଡ଼ିଲା ନାହିଁ । ମଶାଲର ନାଲିଚିଆ ଆଲୁଅରେ ଦେଖା ଗଲା ମାଟି ଉପରେ ନାଲିନାଲି ଫୁଲ ବିଞ୍ଛେଇ ହୋଇ ପଡ଼ିଛି । ମଦନ ଉପରକୁ ଅନାଇଲା । ବଣ ମଝିରେ ଗୋଟିଏ ଶିମିଳୀ ଗଛ । ଗୋଟିଏ ନହେଲେ ପତ୍ରନାହିଁ । ନାଲିନାଲି ଫୁଲରେ ଗଛ ଭର୍ତ୍ତି ହୋଇଛି । କୁହାଣ ଶୁଭୁଛି ସେଇ ଗଛ ଉପରୁ ।

ମଶାଲକୁ ଟିକିଏ ଉପରକୁ ଟେକି ଭଗି କହିଲା—'ଅନା, ଭଲ କରି ନିଘାକର । ଏଇ ଗଛ ଅଗରେ ଶାଗୁଣା ବସାକରିଛି । ମୁଁ ଦେଖିଛି, ଶାଗୁଣାମାନେ କେଜାଣି କାହିଁକି, ଶିମୁଳୀ ଗଛରେ ବସା ବାନ୍ଧିବାକୁ ଭାରି ଭଲ ପାଆନ୍ତି ।

ମଦନ ଉପରକୁ ଅନାଇଲା । ଅନ୍ଧାରରେ ବେଶୀ କିଛି ଦେଖା ଗଲା ନାହିଁ । ତେବେ କୁହୁଣ ବନ୍ଦ ହୋଇଗଲା । ଦୁ'ଜଣ ଯାକ ଆଉ କିଛି ସମୟ ଅପେକ୍ଷା କଲେ । ସବୁ ଚୁପ୍‌ଚାପ୍ ।

କେତେବେଳ ପରେ ମଦନ କହିଲା- "ଚାଲ ଯିବା । ମୁଁ ବୁଝିଲିଣି ।"

ହଠାତ୍ ମଦନର ମନେପଡ଼ିଗଲା । ମଉଜା ଗୀତ ନାହିଁ । ସେ ଚାରିଆଡ଼କୁ ଅନାଇଲା । ଧୂଆଁଳିଆ ମଶାଲ ଆଲୁଅରେ ଦେଖାଗଲା ଟିକିଏ ଦୂରରେ ମଉଜା ବଦ୍ରପୁଲେଇ କାହା ଆଡ଼କୁ ଅନେଇ 'ଘରର ଘରର' ହେଉଛି । ମଦନ ଦଉଡ଼ି ଯିବାକୁ ବାହାରି ଥିଲା । ଭଗିଡାକୁ ପଛଆଡୁ ଟାଣି ଧରି କହିଲା—"ରହ । ସେମିତି ତରତର ହଅନା । ମୁଁ ଆଲୁଅଧରି ଆଗରେ ଯାଏଁ । ମୋ ପଛେ ପଛେ ଆ । ନିଜ ଦୁସିଆରରେ ଚାଲିବା ଭଲ ।"

ମଦନ ଭଗିର ପଛେ ପଛେ ଯାଉଥାଏ । ତା' ଆଖି ଥାଏ ମଉଜା ଉପରେ । ମଉଜା କାହା ଉପରେ ଡେଇଁ ପଡ଼ିବାକୁ ତିଆରି ହେଉଥାଏ । କିଛିବାଟ ଗଲାପରେ ଯେଉଁ ଦୃଶ୍ୟ ଦେଖାଗଲା, ସେଥିରେ ମଦନର ରକ୍ତ ପାଣି ପାଟି ଯିବା ଉପରେ ।

ଦୁ'ଟା ବୁଦାମଝିରେ ଅଳ୍ପଟିକିଏ ଫାଙ୍କାଜାଗା । ତାରି ମଝିରେ ଫଣାଟେକି ଠିଆ ହୋଇଛି, ଏତେ ବଡ଼ ସାପ । ଆଲୁଅରେ ତା' ଆଖି ଜଳିଲା ଭଳି ଦିଶୁଛି । ବେଗରେ ସେ ନିଜ ଜିଭକୁ ବାହାର କରୁଛି ପୁଣି ଭିତରକୁ ନେଉଛି । ନିଶୁନ୍‌ଘାତରେ ତା'ର ସୁ'ସୁ' ଶବ୍ଦ ବେଶ୍ ଭୟଙ୍କର ଶୁଣାଯାଉଛି । ସାପଟା ପବନରେ ଧୀରେ ଧୀରେ ଦୋହଲୁଛି । ସତେ ଯେମିତି ନେଉଳ ଉପରକୁ ଡେଇଁ ପଡ଼ିବା ଆଗରୁ ସେ ନିଜକୁ ତିଆରି କରି ନେଉଛି ।

ମଉଜା ସାଏଁ କରି ଡେଇଁପଡ଼ି ସାପର ବେକ ମୂଳକୁ ଧରି ଝୁଲି ପଡ଼ିଲା । ସାପ ମାଟିରେ ଲେଟି ପଡ଼ି, ଫଣାରେ ଭୂଇଁକୁ ଗୋଟେ ମାରୁଥାଏ । ଆଉ ଲାଙ୍ଗୁଡ଼ ଗୁଡ଼ାଇ ନେଉଳକୁ ବେ-କାଇଦାରେ ପକାଇ

ବାକୁ ଚେଷ୍ଟାକରୁଥାଏ । ନେଉଳ ବ ଘରି ବୁଲିଥାଏ । ସେ ପ୍ରତିଥର ଚକ୍ଚକିଆ ଜନିଷ ଭଳି ସୂଢ଼ କରି ଖସିଯାଇ ନିଜକୁ ରକ୍ଷା କରୁଥାଏ ।

ଦୁ'ଜଣ ଯାକ କହୁ ବେଳଯାଏ, ସାପ ନେଉଳର ଲଢ଼େଇ ଦେଖିଲେ । ଭଗି କହିଲା –"କେଡ଼େ ବଡ଼ ସାପ ଦେଖିଲୁଟି !ମଉଜୀ ବେଶୀ ବେଳଯାଏ, ତା' ସାଙ୍ଗରେ ଲଢ଼ି ପାରିବ ନାହିଁ । ବେଳ ଥାଉଁ ଥାଉଁ ବାଟ କଟିବାକୁ ପଡ଼ିବ ।"

ମଦନ ରାଗରେ ଆଗକୁ ଦଉଡ଼ି ଯାଉଥିଲା । ଦାନ୍ତରଗଡ଼ି କହିଲା "ଦଉଡି ଧରିତା' ମଜାବାହାର କରି ।"

ଭଗି ପୁଣି ବାଧା ଦେଲା । କହିଲା"ସେମିତି ଚରିତର ହ'ନାହିଁ । ନେ, ଆଲୁଅଧର । ଦେଖ୍, ମୁଁ କ'ଣ କରୁଚି ।"

ମଦନ ଭଗି ହାତରୁ ଆଲୁଅ ନେଲା । ଭଗିନିଜ ମୁଣିରୁ ବାହାର କଲା, ଗୋଟାଏ ମୁନିଆଁ ଛୁରୀ । ମଶାଲ ଆଲୁଅରେ ତା' ଫଳା ଚକ୍ଚକ୍ କରି ଉଠିଲା । ଭଗି ଛୁରୀକୁ ବାଗେଇ ଧରି ପ୍ରଥମେ ଲାଖ କଲା । ତା'ପରେ ସାଏଁ କରି ଛାଡ଼ିଦେଲା ।

ଛୁରୀ ଯାଇଁ ଗଳିଗଲା ସାପର ବେକତଳକୁ । ସାପ ଭୂଇଁରେ ଲୋଟି ପଡ଼ି ଛଟପଟ ହେବାକୁ ଲାଗିଲା । ମଉଜୀ ଏଥର ସାହସ ପାଇଯି ଗଲା । ଦେଖୁ ଦେଖୁଁ ଏଡ଼େ ମୋଟ ସାପକୁ ଦୁ'ଗଡ଼ କରି ଦେଲା । ସାପର ଲାଙ୍ଗୁଡ଼ ଖଣ୍ଡିକ କେତେବେଳଯାଏ ମାଟି ଉପରେ ଡେଇଁ ଡେଇଁ ଶେଷକୁ ଥିର ହୋଇଗଲା ।

ଦୁ'ଜଣ ଯାକ ଚୁପ୍ଚାପ୍ ଦେଖୁଥିଲେ । ଏଥର ଭଗି କହିଲା– "କେଡ଼େ ବଡ଼ ସାପ ଦେଖିଲୁଟି । ଆକୁ କହନ୍ତି ଅହିରାଜ । ତା'କାମୁଡ଼ାରେ ହାତୀ ବି ଟଳିପଡ଼େ । ଆଜି ମଉଜୀ ନଥିଲେ, ଆମ ଦଶା କଣ ହୋଇ-ଥାଆନ୍ତା କିଏ ଜାଣେ । ଭଗବାନ ବଡ଼ଲୋକ । ଆମକୁ ବଞ୍ଚେଇ ଦେଲେ ।"

ମଦନର ମୁହଁରୁ କଥା ବାହାରୁ ନଥାଏ । ଭଗି ତା'ପାଖକୁ ଗଲା କହିଲା "କରେ ଏତିକିରେ ସାହସ ହରାଇଦେଲୁ । ମଣିଷ ପରି ବଞ୍ଚିବାକୁ

ହେଲେ ଲୋଡ଼ା ସାହସ । ଜନମ ହେଲେ ତ ଦିନେ ନା ଦିନେ ମରିବାକୁ ପଡ଼ିବ । ଯୋଉଁମାନେ ଡରୁଆ, ସେମାନେ ସବୁ ଦିନେ ମରୁଥାଆନ୍ତି । ଚାଲ, ଆମେ ଆଗକୁ ଯିବା । ମଉଜୀକୁ ଡାକ ।"

ମଦନ ଏ ଭିତରେ ନିଜକୁ ସମ୍ଭାଳି ନେଇଥିଲା । ପାଟିଭିତରେ ହାତ ପୂରାଇ ସୁସୁର ମାରିଲା ଭଳି ଚୋଟିଏ ଶବ୍ଦ କଲା । ମଉଜୀ ଦୂରକୁ ଚାଲିଯାଇଥିଲେ, ଏମିତି ସେ ତାକୁ ପାଖକୁ ଡାକେ । ସୁସୁର ଶବ୍ଦ ମଉଜୀଶ୍ୱମର କାନରେ ପଡ଼ିଲା । ସେ ମଲାସାପକୁ ଛାଡ଼ିଦେଇ, ମଦନଆଡ଼କୁ ଧାଇଁଗଲା । ତା' ଦେହମୁହଁ ବୃରିଆଡ଼େ ମେଞ୍ଚା ମେଞ୍ଚା ରକ୍ତ ଲାଗିଥାଏ । ପାଖରେ ଗୋଟାଏ ଛୋଟ ଗାତରେ ବର୍ଷାପାଣି ଜମା ହୋଇଥିଲା । ମଦନ ସେଇଥିରେ ମଉଜୀକୁ ଧୋଇଦେଲା । ତା'ପରେ ତାକୁ ନିଜ ଗାମୁଛାରେ ପୋଛିପାଛି କରି ଆଦରରେ ଆଉଁସିବାକୁ ଲାଗିଲା । ମଉଜୀ ମଦନର ମନକଥା ବୁଝିପାରେ । ସେ ମଦନ ହାତରେ ଖୀଇ ଖୁସିରେ ଘଡ଼ଘଡ଼ ହେବାକୁ ଲାଗିଲା ।

ଭଗି କହିଲା, "ରାତି କେତେବାଟ ରହିଲା ଜାଣିହେଉନାହିଁ । ବେଶି ପାହି ଦିନ ହୋଇଗଲେ ଆମକୁ ଅସୁବିଧା ହେବ । ଠିକ୍ ସମୟରେ ଘରକୁ ନଫେରିଲେ ତେଣେ ସମସ୍ତେ ବ୍ୟସ୍ତ ହେବେ । ଗୋଡ଼ କାଢ଼ିଟିକିଏ ଚଞ୍ଚଳ ଚାଲ ।" ମଦନ କିଛି ନକହି ଭଗି ପଛେ ପଛେ ଚାଲିଲା ।

ଚାରିଆଡ଼େ କଟକଟି ଅନ୍ଧାର । ଭଗି ମଶାଲ ଜଳେଇ ଦେଇଛି । ଆଗ ଭଳି ଝିଙ୍କାରିର ଝିଁ ଝିଁ ରଡ଼ି କାନ ଅତଡ଼ା ପକାଉଛି । ଏଥର ଶୁଣାଗଲା ଖୁବ୍ ଜୋର୍‌ରେ ପାଣିର କଳକଳ ଛଳଛଳ ଶବ୍ଦ । ମଦନ କିଛି ବୁଝିପାରିଲା ନାହିଁ । ସେ ପଚାରିଲା,... 'ଭଗି ଦାଦା ! ଆଗରେ ନାଳଫାଳ ପଡ଼ିବ ନା କଣ ? ଏତେ ଜୋର୍‌ରେ ପାଣି ପଡ଼ୁଛି କୋଉଠି ?'

ଭଗି ଚାଲୁ ଚାଲୁ କହିଲା—ମନେ ହଉଛି, ଆମେ ଦେଓଝାଇ ପାଖରେ ପହଞ୍ଚିଗଲୁଣି । ଖାଇ ଭିତରଦେଇ ବର୍ଷା ପାଣି ବହିଯାଉଛି ।

ମଦନ କହିଲା— "ଆଲୁଅଟା ଜଳେଇ ରଖିଥିଲେ ଭଲ ହୋଇଥାଆନ୍ତା । ଅନ୍ଧାରରେ ବାଟ ଠଉର କରିପିବାକୁ କଷ୍ଟ ହଉଚି ।"

ଭଗି ଧୀରେ ଧୀରେ ହସିଲା । କହିଲା—"ଆରେ ବୋକା । ଆଲୁଅ ଜଳାଇ କିଏ ଚୋର ଧରିବାକୁ ଯାଏ ? ହଠାତ୍ ଆଲୁଅରୁ ଅନ୍ଧାରକୁ ଆସିବାରୁ ସେମିତି ମନେ ହେଉଚି । ଧୀରେ ଧୀରେ ଏଇ ଅନ୍ଧାର ଆଖିକୁ ସହିଯିବ । ସେତେବେଳେ ଆଉ କଷ୍ଟ ହେବ ନାହିଁ । ମୋର ଅନ୍ଧାରରେ ଚାଲିବା ଅଭ୍ୟାସ ଅଛି । ମୋତେ ଅନାଇ ଚାଲୁଥା ।"

ମଦନ ପଚାରିଲା,"ଆମେ ଠିକ୍ ଗଡ଼ଆଡ଼କୁ ଯାଉଚେଟି ?"

ଭଗି କହିଲା—"ମୋର ହିସାବ ଠିକ୍ ଅଛି । ପୂର୍ବଦିଗକୁ ମୁହଁ କରି ଚାଲିଲେ ଆମେ ଗଡ଼ ପାଖରେ ପହଞ୍ଚିବା । ଆଲୁଅ ଜଳୁଥିବାବେଳେ ମୁଁ ଦିଗବାରି ଥିଲି । ମନେ ହଉଚି ଆମେ ଠିକ୍ ବାଟରେ ଚାଲିଛେ ।"

ହଠାତ୍ ମଦନ ଠିଆହୋଇ ପଡ଼ିଲା । ଭଗି କାନ୍ଧରେ ହାତ ରଖି ତାକୁ କଣ କହିବ ବୋଲି ଚେଷ୍ଟା କଲା । ହେଲେ ତା' ପାଟିରୁ କଥା ବାହାରିଲା ନାହିଁ । ଭଗି ବି ଠିଆ ହୋଇ ପଡ଼ିଲା । କହିଲା କଣ ହେଲା ?

ମଦନ ଖାଲି କହିଲା ,"ଆଲୁଅ ।'

ଏଥର ଭଗି ଆଗକୁ ଅନାଇଲା । କିଛିବାଟ ଆଗରେ ହଠାତ୍ ଗୋଟାଏ ଜାଗାରେ ଆଲୁଅ ଜଳି ଉଠି ଲିଭିଗଲା । ଭଗି ଚୁପ୍ ହୋଇ ଠିଆ ହୋଇ ପଡ଼ିଲା । କିଛିବେଳ ଭାବିଲା । ତା'ପରେ କହିଲା, "ବିଲୁଆଟାଏ ହୋଇଥିବ । ଗୋଟାଏ ଜାତିର ବିଲୁଆ ଅଛନ୍ତି । ପାଟି ମେଲା କଲେ, ତାଙ୍କ ମୁହଁରୁ ଆଲୁଅ ବାହାରେ । ରାତିରେ ସେଇଆକୁ ଦେଖି ଲୋକେ ଡରନ୍ତି । ଆ, ଆମେ ଦେଖିବା ।"

ମଦନ ଭଗିର ପାଟିକଥା ପାଟିରେ ଅଛି, ହଠାତ୍ ବିଲୁଆଟାଏ ବୋବାଇ ଉଠିଲା । ସେ ଜାଗାଟା ଆଲୁଅ ହୋଇଗଲା । ବିଲୁଆର ବୋବାଳି ବନ୍ଦ ହୋଇଗଲା ପରେ ପୁଣି ଅନ୍ଧାର ।

ଭଗି କହିଲା, "ଦେଖିଲୁତ । ବଲୁଆ ଆମକୁ ଦେଖି ତା' ବାଟରେ ଚାଲାଇଲାଣି । ଅନ୍ଧାରରେ କାରବାର ହେବାକୁ ହେଲେ, କେତୋଟି କଥା ଜାଣିବାକୁ ହୁଏ । ନ ହେଲେ ଅସୁବିଧାରେ ପଡ଼ିବ । ତୁ ଜାଣିଚୁ ମଦନ । ଲୋକେ କହନ୍ତି ମଶାଣି ଭୂଇଁରେ ଡ଼ାଆଣୀ ଆଲୁଅ ଜଳାଇ, ପିଲା ସେକୁଥାଏ । ସେଇଆକୁ ଦେଖି କେତେ ଲୋକ ଗୁନିଆଁ ହୋଇ ମରିବାର ବି ଶୁଣିଚ । ହେଲେ, ମୁଁ ଜାଣିଚ, ଡାଆଣୀ ଫାଆଣି କଥା ସବୁ ମିଛ ।"

ମଦନ ଏତିକବେଳେ କହିଲା "ଲୋକେ ନିଜ ଆଖିରେ ଦେଖିବା କଥାକୁ ତମେ ମିଛ ବୋଲି କହୁଚ ଭଗିଦାଦା । ଗଲା ସନ ଆମ ଗାଁର ଫକୀର ପରି ଭେଟଣା ହୋଇ ମରିଚି ।"

ଭଗି କହିଲା, "ସେ ମରିଚି ଗୁନିଆଁରେ । ମୁଁ ଜାଣେ, ନିଗୁଡିଆ ଜାଗାରେ କାଠିକୁଟା ପତର ସବୁ ପଚିସଡ଼ି ଗଦା ହୋଇ-ଥାଏ । ପବନ ବାଜିଲେ, ସେଥିରୁ ଗୋଟାଏ ପ୍ରକାରର ଆଲୁଅ ବାହାରେ । ଲୋକ ସେଇଆକୁ ଦେଖି ଗୁନିଆଁ ହୋଇଯାଏ । ଡ଼ାଆଣୀ ଆଲୁଅ ବୋଲି ମନେ କରେ । ନାନାପ୍ରକାର ମନଗଢ଼ା କାହାଣୀ କୁହେ । ନ ହେଲେ ମୁଁ କେତେଆଡ଼ ବୁଲିଚି । କେତେ ରାତି ଏମିତି ଏକୁଟିଆ ନିଗୁଡିଆ ଜାଗାରେ କଟାଇ ଦେଇଚି । କେବେ କିଛି ଭୂତପ୍ରେତ କି ଡାଆଣୀ ଦେଖି ନାହିଁ ।"

ଦୁ'ଜଣଯାକ ଆଗେଇ ଚାଲିଥାଆନ୍ତି । ହଠାତ୍ ଗୋଟାଏ ମଡ଼ ମଡ଼ ଶବ୍ଦ ଶୁଣି ଦୁଇବନ୍ଧୁ ଚମକି ପଡ଼ିଲେ । ନିଶୁନ ରାତିର ଛାତି ଚିରି ଗୋଟାଏ ଭାରି କଦମ୍ବ ଓଜାଡ଼ି ହୋଇ ପଡ଼ିଲା । କେତେଗୁଡ଼ାଏ ଚଢ଼େଇ ଏକାସାଙ୍ଗରେ ବୋବାଇ ଉଠିଲେ । ବଲୁଆ ଗୁଡ଼ାଏ ଭୁକି ଉଠିଲେ ।

ମଦନ ଭଗି କାନ୍ଧକୁ ଜୋର୍‌ରେ ଜାବୁଡ଼ି ଧରିଲା । ଭଗି ବି ଆଉ ଆଗକୁ ନ ବଢ଼ି ସେଇଠି ଚୁପ୍‌ଚାପ୍ ଠିଆହେଲା । ତା' ପାଦ ଦି'ଟା ଯେମିତି ମାଟିରେ ପୋତି ହୋଇ ଯାଇଚି ।

●

# ଗଡ଼ ଦୁଆରେ ଭଗି ଆଉ ମଦନ

ଜଣାପାଉଚି ରାତି ଆଉ ବେଶୀ ନାହିଁ । ବର୍ଷା ବି ଏ ଭିତରେ କେତେବେଳେ ବନ୍ଦ ହୋଇଗଲାଣି । ପାହାନ୍ତି ପବନ ବାଜି ପିଲାଦିହଙ୍କ ଦେହ ଶୀତେଇ ଉଠୁଚି । ଓଦାଲୁଗା ବି ଶୁଖି ଆସିଲାଣି । କଣ୍ଟାଝଙ୍ଗା ଭିତରେ ବାଟ କାଟି ଦି'ଜଣଯାକ ଚାଲିଛନ୍ତି ।

ଭଗି ଆକାଶ ଆଡ଼କୁ ଅନାଇ ବେଳ ଠଉରେଇବାକୁ ଚେଷ୍ଟା କଲା । କହିଲା—"ଆଉ କିଛି ସମୟ ପରେ ରାତି ପାହିଯିବ । ଆମେ ତ ଏତେବେଳଯାଏ ଗଡ଼ ପାଖରେ ପହଞ୍ଚିପାରିଲେ ନାହିଁ ।"

ମଦନ କହିଲା "ଭଗି ଦାଦା ! ତମେ ମିଛରେ ବ୍ୟସ୍ତ ହଉଚ । ଏମିତି ରାତିରେ ଚୋରମାନେ କୋଉ ଗଡ଼ ଭିତରେ ବସିଥିବେ । ଦିନରେ ସିନା ଖୋଜିବାକୁ ସୁବିଧା । ଆସିଚେ ଯେତେବେଳେ, ଯେମିତି ହେଲେ ସେମାନଙ୍କୁ ଧରିବା ନା ।"

ଭଗି ହସିଲା । କହିଲା—"ତୋର ତ ଆ'ଭିତରେ ବହୁତ ସାହସ ହୋଇଗଲାଣି । ମୁଁ ମୋ କଥା ଭାବୁନାହିଁ । ମଝିରେ ମଝିରେ ମୋର ଏମିତି ଘର ଛାଡ଼ି ଚାଲିଯିବା କଥା ଘରେ ସମସ୍ତେ ଜାଣନ୍ତି । ସେମାନେ ବ୍ୟସ୍ତ ହେବେ ନାହିଁ । ହେଲେ ସକାଳୁ ତତେ ଘରେ ନ ଦେଖିଲେ, ସେଠି ହାଲହୋଲା ପଡ଼ିଯିବ । ମୁଁ ଜଗୁଭାଇଙ୍କୁ ମୁହଁ ଦେଖାଇବି କେମିତି ?"

ମଦନ କହିଲା—"ସେ ସେତେବେଳେ ଦେଖାଯିବ । ମୁଁ ଆସିଚି ମୋ ନିଜ ଇଚ୍ଛାରେ । ତମକୁ କିଏ କଣ କହିବ ?"

ହଠାତ୍ ମଦନର ମାଙ୍କ କଥା ମନେ ପଡ଼ିଲା । ସକାଳୁ ତାକୁ ନ ଦେଖିଲେ, ସେ ନିଶ୍ଚେ କନ୍ଦାବୋବା ଆରମ୍ଭ କରିଦେବ । ତା' ଆଖିରେ ପାଣି ଆସିଗଲା ।

ଭଗି କହିଲା "ତେବେ କଣ, କାହାରିକୁ ବି ଏଯାଏଁ କଥାଟା କହିନାହିଁ । ସେଦିନ ରାତିରେ ମୋ ହାତର ସାବଳମାଡ଼ ଖାଇ ଶ୍ରେରଦଳ ତ ପଳାଇଲେ । ମୁଁ ତାଙ୍କୁ ଗୋଡ଼ାଇଲି । ଚୋଟା ଭିତରେ ଅନ୍ଧାର । ମୁଁ ବାଟବଣା ହୋଇଗଲି । ତେବେ ଶ୍ରେରଙ୍କ ପିଛା ଛାଡ଼ିଲି ନାହିଁ । ମୋର ବିଶ୍ୱାସ, ସେମାନେ ନିଶ୍ଚେ ଏଇ ବଣଆଡ଼କୁ ଆସିବେ । କେତେବେଳ ପରେ ମୁଁ ଚୋଟା ବାହାରକୁ ଆସିଲି । କାଳୀ ଜହ୍ନ ପଡ଼ିଥାଏ । ମୁଁ ଇଆଡ଼େ ଅନାଇଲି । ସଫା ଦେଖିତ, ଘୋଡ଼ାଟା ମୋ ମାଡ଼ରେ ଘାଇଲା ହୋଇଥିଲା, ସେଇଆକୁ ଧରି ଆଉ ଗୋଟାଏ କଳାଛୁଇ, ଏଇ ଜଙ୍ଗଲ ଭିତରେ ପଶିଲା । ସହଜେ ରାତି, ଏଣେ ପୁଣି ମୁଁ ଏକୁଟିଆ । ଟିକିଏ ସଚାର କରିଗଲି । ନ ହେଲେ ପୁଅଙ୍କୁ ହରଡ଼-ଘଣାରେ ପକାଇ ନ ଥାନ୍ତି ।"

ମଦନ କହିଲା, "ସେ କଥା ଠିକ୍ । ତେବେ ଶ୍ରେରମାନଙ୍କର କାମ ତ ରାତିରେ । ସେମାନେ ଆଉ କୁଆଡ଼େ ଯାଇଥିବେ ।"

ଭଗି ରାଜିହେଲା ନାହିଁ । କହିଲା—"ଏତେ ମାଲ ହାତରେ ପଡ଼ିଛି । ସେମାନେ ନିଶ୍ଚେ ଆଜି କୁଆଡ଼େ ଯାଇ ନ ଥିବେ । ଖୁସିରେ ଖାଇପିଇ ଆରାମରେ ଘୁଂଘୁଡ଼ି ମାରୁଥିବେ । ଏତିକବେଳେ କୁକୁଡ଼ାଝୁଆ ଉପରେ ଚାଲି ପଡ଼ିଲା ପରି ଆମକୁ ଝାମ୍ପି ପଡ଼ିବାକୁ ହେବ । ତୁ ଗୋଡ଼ କାଢି ଚଞ୍ଚଳ ଚାଲିଲୁ ।"

ମଦନ କହିଲା "ମୁଁ କଣ ବସିଛି ! ଦେଖୁଛ ତ ଗୋଟିଏ ପରେ ଗୋଟିଏ ଘଟଣା କେମିତି ଘଟୁଛି । ଆଉ ଟିକକରେ ତ ଭାଲୁ ହାତରେ ଜୀବନ ଯାଇ ଥାଆନ୍ତା ।"

ଭଗି କହିଲା "ଭାଗ୍ୟକୁ ତୋ ମୁଣ୍ଡରେ ବାଟୁଳି ଖଡ଼ାଟା ଥିଲା । ଅନାଧୁନିଆ ବାଟୁଳି ଖଡ଼ାମାଡ଼ ଖାଇ ଭାଲୁ ଦ'ଟା ଯେ ଅଚ୍ଛିଆ କୁଆଡ଼େ ପଳାଇଲେ, ଜାଣି ହେଉନାହିଁ । ମୁଁ ଜାଣେ, ସେମାନେ ନିକଟରେ ଆଉ ଏ ମୁହାଁ ହେବେ ନାହିଁ । ବଡ଼ମାଳିଆ ପାହାଡ଼ରୁ ବେଳେ ବେଳେ ଏଆଡ଼େ ଭାଲୁ ଗଡ଼ନ୍ତି । ମୁଁ ଜାଣେ । ତେବେ ଆଜି ଯେ, ଭାଲୁ ସାଙ୍ଗରେ ମୁହାଁମୁହିଁ ହୋଇଯିବ, ଏ କଥା କିଏ ଜାଣିଥିଲା ।"

ବାହୁଳୀଖଡ଼ା କଥାରୁ ମଦନର ଜେଜେବାପାଙ୍କ କଥା ମନେ ପଡ଼ିଗଲା । ହେଉ ହେଲା ଦିନରୁ ମଦନ ତାଙ୍କର ପାଖେ ପାଖେ ଥାଏ । ତାଙ୍କର ସାଙ୍ଗରେ ଖାଏ, ପିଏ, ଶୁଏ ଆଉ ବୁଲେ । ବୁଢ଼ା ଫଗୁ ସାମଲ ନାତିକୁ ଜୀବନରୁ ଅଧିକ କରିଥିଲେ । ସେଇ ତ ନିଜ ହାତରେ ତାକୁ ବାହୁଳୀଖଡ଼ାରେ ଲିଖ କରିବା ଶିଖେଇ ଥିଲେ । ହୋକେନିଆ କାଠ ଖଣ୍ଡେ ଆଣି ସେଥିରେ ଦି'ପଟେ ରବର ଆଉ ମଝିରେ ଚମଡ଼ା ଦେଇ ବଢ଼ିଆ ଖଡ଼ାଟାଏ ତିଆରି କରିଦେଇଥିଲେ । ଚକଟାମାଟି ଆଣି ସେଥିରେ ଛୋଟ ଛୋଟ ଗୋଳି ତିଆରିକରି ଖରାରେ ଶୁଖେଇ ସାଇତି ଥିଲେ । ତା'ପରେ ଦାଣ୍ଡ ପିଣ୍ଡାରେ ଦୁଧଖଣ୍ଡରେ ଛକ କାଟି ମଦନକୁ ଠିଆକରାଇ ଲିଖ କରିବାକୁ ଶିଖେଇ ଥିଲେ ।

ଏମିତି ଲିଖ କରୁ କରୁ ଦିନେ ତ ରକ୍ତାରକ୍ତି କାଣ୍ଡ । ସେତେ-ବେଳକୁ ସେ ନୂଆ ନୂଆ ଶିଖୁଥାଏ । ଖଡ଼ାରୁ ବାହୁଳୀ ଖସି ଟାଁଏକରି ବାଜିଲା ଯାଇଁ ତା ନିଜ ଆଖିପତାରେ । ମଦନର ମୁଣ୍ଡ ବୁଲେଇ ଦେଲା । ସେ ଦୁମ୍‌କରି ତଳେ ପଡ଼ିଗଲା । ପାଟି ଗୋଳ ଶୁଣି ଭିତରୁ ସମସ୍ତେ ଧାଇଁ ଆସିଲେ । ବୋଉ ତ ବୋହୂ ମଣିଷ । ଦାଣ୍ଡକୁ ଆସିପାରିବ ନାହିଁ । ଜଗୁ ସାମଲ ଯେତେ ବ୍ୟସ୍ତ ହେଲେ ବି ବାପ ଆଗରେ ପାଟିଖୋଲିବ ନାହିଁ । ପାଟି କରୁଥାଏ ଜେଜେମା । 'ଆଲୋ ସତ୍ୟାନାସିଆ ବୁଢ଼ା ମୋ ପୁଅକୁ ମାରି ପକେଇଲା ଲୋ । ଆଲୋ ମୁଁ କ'ଣ କରିବ ଲୋ···କୁଆଡ଼େଗଲା ସେ ନିଆଁରଡ଼ ବାହୁଳୀଖଡ଼ା—ତାକୁ ମୁଁ ଆଗ ଚୂଲିରେ ମୋହିଁବିଲେ— ଏମିତି ପାଟିକରି ବାହୁନା ପକାଇଥାଏ । ତା' ପାଟି ରଡ଼ରେ ସାଇପଡ଼ିଶା ଜମା ହୋଇଗଲେ । ଏତେବେଳକୁ ମଦନ ଆଖି ଖୋଲି ଅନାଇଲାଣି । ତା' ଆଖିପତା ଫିଙ୍ଗି ନେଳୀ ହୋଇଯାଇଥାଏ । ଜେଜେଙ୍କ ଆଡ଼କୁ ଅନାଇ ସେ ଅଳପ ହସିଲା । ତା' ହସ ଦେଖି ଜେଜେଙ୍କ ପିଣ୍ଡରେ ପ୍ରାଣ ପଶିଲା । ଗୋଟାଏ ହୁଙ୍କାର ଛାଡ଼ି ସେ ଗର୍ଜନ କଲେ, "ଚୁପ୍‌କର ହାରାମୀ ଜେନାନା ! ରାଗିଗଲେ ଜେଜେ ଏମିତି ଗୋଲ୍‌ଟୀ ଚଳାନ୍ତି । ଜେଜେଙ୍କ ପାଟିରେ ଦୁମ୍ ଦୁମ୍ ପାଦ ପକାଇ ଜେଜେମା ଘର ଭିତରକୁ ଚାଲିଗଲେ । ଭିଡ଼ ଭାଙ୍ଗି ଗଲା ।

ତା'ପରେ ଜେଜେ ତାଙ୍କୁ କାଖ କରି ବୁଲେଇଲେ । କହିଲେ, "ଅଲଗିଣା । ବାଟୁଳିଖଣ୍ଡାକୁ ଓଲଟାଇ ଧରି ମାରିଲେ ବାଟୁଳି ନିଜ ଦିହରେ ବାଜିବ ପିଲା । ଆଉଟିକକରେ ତୋ ଆଖି ଯାଇଥାନ୍ତା । ସେତେବେଳେ ତୋ ଜେଜେମା ଆଉ ମତେ ଘରେ ରଖିଥାଆନ୍ତାକି !"

ଜେଜେଙ୍କ କଥା ଶୁଣି ମଦନ କହିଥିଲା—"ମୋର କ'ଣ ହୋଇଛି କ ?"

ଜେଜେ କହିଲେ, "ସେ କଥା କଣ ମୁଁ ଜାଣିନାହିଁ ! ଭୁତ ମୋର ବାହାଦୁର୍ ନାତି । ପୁରୁଷ ପିଲା ହୋଇ ନାକ କାନ୍ଦୁରା ହେବା ଅପେକ୍ଷା ବରଂ ମରିଯିବା ଭଲ । ତୋ ଜେଜେମା କ'ଣ ଏତିକ ବୁଝୁଛି ।" ତା'ପରେ ସେ ତାଙ୍କୁ ଅର୍ଜ୍ଜୁନଙ୍କ ଲକ୍ଷଭେଦ ଗପ ଶୁଣାଇ ଥିଲେ । ଗୁରୁ ଯେତେବେଳେ ଗଛରେ ବସିଥିବା ଚଢେଇକୁ ଲକ୍ଷ କରିବାକୁ କହି ସମସ୍ତଙ୍କୁ ଜଣ ଜଣ କରି ପଚାରିଲେ, କହ, କଣ ଦେଖୁଛ ! କିଏ କେତେ-ପ୍ରକାର କହିଲେ । ଖାଲି ଅର୍ଜ୍ଜୁନ କହିଲେ, ଗୁରୁଦେବ ! ମୋତେ ଚଢ଼େଇର ଆଖିଛଡ଼ା କିଛି ଦିଶୁନାହିଁ । ଦ୍ରୋଣଗୁରୁ ଅର୍ଜ୍ଜୁନଙ୍କୁ ସାବାସୀ ଦେଇଥିଲେ । ଜେଜେ ଗପ କହିସାରି କହିଥିଲେ, ଲକ୍ଷ ଭେଦିବାର୍ ଏମିତି ହବ । ନିଜ ଲକ୍ଷ୍ୟ ଛଡ଼ା ତାଙ୍କୁ ଯେମିତି ଆଉ କିଛି ଦିଶିବ ନାହିଁ । ତାର ପିଲାମନରେ ଜେଜେଙ୍କ କଥା କେଇପଦ ପଥରରେ ଗାର ଟାଣିଲା ପରି ରହିଯାଇଥିଲା ।

ତା'ପରେ ତ କେତେଦିନ ଗଲା । ଧୀରେ ଧୀରେ ବାଟୁଳି ଚଳାଉ ଚଳାଉ ମଦନ ସେଥିରେ ଏତେ କୁଶଳୀ ହୋଇଗଲାଯେ, ଉଡ଼ିଯାଉଥିବା ଚଢ଼େଇକୁ ବି ସେ ବାଟୁଳି ମାରି ଖସେଇ ଦେଇପାରୁଥିଲା । ଅନ୍ଧାରରେ ଶବ୍ଦବାରି ସେ ଜନ୍ତୁ ଜୀବଙ୍କୁ ଘାଇଲା କରି ପାରୁଥିଲା । ଏମିତିକି ସାଙ୍ଗମାନଙ୍କ ସାଥିରେ ବାଜିମାରି ତାଳଗଛ ଅଗରୁ ବଣିଛୁଆ ଖାଇବାକୁ ଚଢ଼ିଥିବା ସାପକୁ ବି ସେ ବାଟୁଳି ଖଣ୍ଡାରେ ତଳକୁ ଖସେଇ ପକେଇଛି ।

ପିଲାଦିନରୁ ତ ବାଟୁଳିଖଣ୍ଡା ତାର ସବୁବେଳର ସାଥୀ । ଯୁଆଡ଼େ ଯିବ, ନିଶ୍ଚେ ତାଙ୍କୁ ସାଙ୍ଗରେ ନେଇଥିବ । କହିବାକୁ ଗଲେ ବାଟୁଳିଖଣ୍ଡା

ମାରବା ଶିଖେଇବାରେ ଜେଜେବାପା ହଉଛନ୍ତି ତା'ର ଗୁରୁ । ସେଇ ଗୁରୁଙ୍କୁ ସେ ଯୋଗ୍ୟ ଦକ୍ଷିଣା ଦେଇଥିଲା, ସେ କଥା ମନେପଡ଼ି, ଆଜି ମଦନକୁ କାନ୍ଦ ମାଡ଼ୁଚି । କଥାଟା ହୋଇଥିଲା ଏମିତି ।

ବେଳ ଅବେଳରେ ଟିକିଏ ଘଷାମୋଡ଼ା ଖାଇବା ଜେଜେବାପାଙ୍କର ଅଭ୍ୟାସ । ଜେଜେମାକୁ ଖାଲି ବସିଥିବା କି ଶୋଇଥିବାର ଦେଖିଲେ, ତାଙ୍କର କୁହାଣ ବାହାରି ପଡ଼େ । ଉହୋ ହୋ—ଗୋଡ଼ ଦି'ଟା ଯୋଡ଼ା-ବନ୍ଧ ହଉଚି । ଆହାହା—ହାତଟା ଚୁଣ୍ଡି ହେଲା ଭଳି ଲାଗୁଚି ; ଇହିହି, ଅଣ୍ଟାଟା ବାଡ଼ଭଳି ହୋଇ ଯାଇଚି । ଏମିତି କହି ଜେଜେମାଙ୍କୁ ପ୍ରଭାବିତ କରିବାପାଇଁ ଚେଷ୍ଟା କରିବେ । ହେଲେ 'ଗ୍ରାମ ବଳ କୋଇଲ୍ଲାକୁ ଜଣା' ଜେଜେମା ହାଡ଼େ ହାଡ଼େ ଜେଜେବାପାଙ୍କୁ ଚିହ୍ନନ୍ତି । ତାଙ୍କର ମନ ଭଲ ଥିଲେ ସେ ବେଳେ ବେଳେ ବିହିରେ ମୁଣ୍ଡରେ ହାତ ମାରି ଦିଅନ୍ତି ବି । ନ ହେଲେ ପାଟି କରି କମ୍ପାନ୍ତି । ଜେଜେବି ଚୁପ୍ ରହିବାଲାଲ ନୁହନ୍ତି । ବେଣ୍ କଚ୍ଛବେଳଯାଏ ଚଡ଼ା ଉତର ପାଲା ଚାଲେ । ଜେଜେମା ଘୁରୁକୁଟୀ ପରି ନାଚି ନାଚି ପାଟି କରୁଥାଆନ୍ତି । ଏଇ ପାଲା ପ୍ରାୟ ସବୁଦିନେ ଚାଲେ ।

ତେବେ ମଦନ ଟିକିଏ ବଡ଼ ହୋଇଯିବା ପରେ ଜେଜେବାପା ତାକୁ ନଜର ପାଙ୍ଗ କଲେ । ପହିଲେ ତାକୁ ତାଙ୍କ ଉପରେ ଠିଆ ହେବାକୁ କହିଲେ, ତା'ପରେ ଟିକିଏ ଘଷା ମୋଡ଼ା କରିବାକୁ ଟ୍ରେନିଂ ଦେଲେ । ଦିନ କେଇଟାରେ ମଦନ ଏ ବିଦ୍ୟା ବି ବେଶ୍ ଭଲକରି ଶିଖିନେଲା । ପିଲା ହାତର ମୁଠି ମୁଠି ଘଷା ବୁଢ଼ାକୁ ଖୁବ୍ ଆରାମ ଲାଗେ । ସେ ଗପ ସୁଅରେ ଭାସିଯାଆନ୍ତି । ମଦନକୁ ହାତ ବନ୍ଦ କରିବାକୁ ବି କହନ୍ତି ନାହିଁ । ମଦନ ଆପେ ଆପେ ହାତ ବନ୍ଦ କଲେ, କି ହାତ ଟିକିଏ ଧିମେଇଗଲେ ଜେଜେ ପାଟିକରି ଉଠନ୍ତି । ଏତିକି ବେଳେ କାଳସୀ ନାଚି ନାଚି ଆସି ପହଞ୍ଚି ଯାଆନ୍ତି । ଜେଜେମା । ତାଙ୍କ ମୁହଁରୁ ଗାଳି ଫୁଲଝରି ବାଣ ପରି ଝରି ପଡୁଥାଏ । 'ଚଣ୍ଡକଟା ବୁଢ଼ା' ବଇଁଶପାଳ ସମସ୍ତଙ୍କୁ ଚାକର କରି-ପାଇଚ୍ଛି । ଦାସ ଦାସୀ ନ ଖଟିଲେ ବୁଢ଼ାକୁ ନିଦ ହଉ ନାଇଁ ଇତ୍ୟାଦି । ଜେଜେବାପା ଏ ସବୁକୁ ଶୁଣି ନଶୁଣିଲା ପରି ରହନ୍ତି । ବେଶୀ ରାଗିଗଲେ ଚଳାନ୍ତି ଖୋଲ୍‌ଟୀ । ଏମିତି ଚାଲୁଥାଏ ।

ଧନେ ଘଷା ଗ୍ଳଲଚ । ଜେଜେବାପା ଆଖି ବୁଜ ଆରାମରେ ପାନ ଖୋବୋଉଚନ୍ତି ଆଉ କ'ଣ ଗୋଟାଏ ହସ କଥାକହି ଆପେ ହସି ହସି ଘର ଫଟେଇଉ ଥାନ୍ତି । ହଠାତ୍ ତାଙ୍କ ହସ କାନ୍ଦରେ ବଦଳି ଗଲା । 'ଦେଖିକରି, ଦେଖିକରିରେ କଣା । ବାଳମୂଳଆଟା ହେଇଚ ପର । ସେ ଜାଗା ଖଣ୍ଡକ ଖାଲି ଧକ୍ ଧକ୍ ଧକ୍ ଧକ୍ ହୋଇ ପଡୁଚ ଉଠୁଚ, ସେଠି ଜମା ହାତ ମାରିବୁ ନାଇଁ, ମୋ ବାପାଟା ପରେ—'

ମଦନ କହିଲା, ଜେଜେ—ଇଏତ କ'ଣ ଏଡ଼େ ଘାଏଁ ଫୁଲିଚ, ଅରିକ ଜାକ ନାଲି ପଡ଼ିଯାଇଚ, କଣ କରିବା ?"

ବୁଢା କହିଲେ, 'ହ'ଦନ ହେବ, ତୋ ଜେଜେମାକୁ କହୁଚ, ଟିକଏ ଗରମପାଣି ସେକ ଦେବାକୁ । ହେଲେ ତା'ର ଖାତର୍ ନାହିଁ ।'

ମଦନ କହିଲା, ମୁଁ ନେଇଆସିବି ଜେଜେ ? ବୋଉକୁ କହିବ, ବୋତଲରେ ପୂରାଇ ଦବ ।

—"ଭଗବାନ ତତେ କୋଟି ପରମାୟୁ ଦଅନ୍ତୁରେ ବାପା ଯା, ଗଲୁ ଜଲ୍ଦି ନେଇଆ—ଖାଲି ଏଇଟା ଫାଟିଯାଉ । ତା' ପରେ ମୁଁ ବୁଢୀକଥା ବୁଝୁଚ ।"

ମଦନ ଖୁବ ଉତ୍ସାହରେ ଗରମ ପାଣି ବୋତଲ ନେଇ ଆସିଥିଲା । ବୋତଲ ଗଡ଼ାଉ ଗଡାଉ ହଠାତ୍ ତା' ମୁଣ୍ଡରେ ବଦମାସୀ ପଶିଲା । ବୁଢା ଆଙ୍ଗୁଠି ନଖରେ ବାଳମୂଳଆକୁ ଭଲ କରି ଚପି ଦେଲା । ଫଗୁ ସାମଲ ଯନ୍ତ୍ରଣାରେ ଚାଟିକରି ଉଠଲେ । ମାରି ପକେଇଲା ମାରିପକେଇଲାରେ ଶଳା'—ଏମିତି ଗାଳି ଦଉ ଦଉ ମଦନକୁ ଗୋଟାଏ ଶକ୍ତ ଗୋଇଠା ମାରିଲେ । ମଦନ ଖଟ ତଳକୁ ଗଡ଼ ଯାଉ ଯାଉ ଉଠିପଡ଼ି ବାହାରକୁ ପଳାଇଲା ।

ସେ ଦିନ ତାକୁ ଘରକୁ ଫେରାଇ ଆଣିଥିଲା ଏଇ ଉଗିଦାଦି । ବାପାତ ମାରିବାକୁ ଗୋଡ଼ାଇ ଥିଲେ । ଅବଶ୍ୟ ଜେଜେମା ଏସବୁ ବେଳଆ ବୁଢାର ଫିକର ବୋଲି କହି, କଥାଟାକୁ ହସରେ ଉଡ଼େଇ ଦବାକୁ

ଚେଷ୍ଟା କରୁଥିଲେ । ଭଗିଚାଙ୍କ ବାପାଙ୍କୁ ବୁଝେଇ ଥିଲା । ପିଲାଲୋକ ! କୋଉ ଭଲ ମନ୍ଦ ବୁଝିଲାଣି ? ହୋଇଟା ଠିକଏ ବାଜି ଯାଇଚି, କହି ବାପାଙ୍କୁ ଶାନ୍ତ କରେଇ ଥିଲି । ଜେଜେଙ୍କ ରାଗ ବି ସେତେବେଳକୁ ପାଣି ହୋଇଯାଇଥିଲା ।

ମଦନ ସେଇ ଦିନଠୁଁ ମନେ ମନେ ଜେଜେଙ୍କ ଉପରେ ରାଗ ପୋଷି ରଖିଛି । ବେଳ ମିଳିଲେ ବୁଢାକୁ ପାନେ ଦବ ବୋଲି ଛକି ରହିଲା । ସୁଯୋଗ ବି ଖୁବ୍ ଶୀଘ୍ର ମିଳିଗଲା ।

ବୁଢା ସବୁଦିନ ଉପର ଓଳି ଖୋଷ୍ଟା ଝପଟ ସାରିବାକୁ ମନ୍ଦାରୁଆ ଆଡ଼େ ଯାଆନ୍ତି । ଫେରୁ ଫେରୁ ~~ସନ୍ଧ୍ୟାରେ~~ ଡେ଼ରି ହୁଏ । ଏଇଟା ତାଙ୍କର ବୁଲିବା ବେଳବି । ପାଞ୍ଚ ଲୋକଙ୍କ ସାଙ୍ଗରେ ଦେଖାହୁଏ । ଚାରି କଥା ପଡ଼େ । ଏଥିରୁ ସାରି ଘରକୁ ଫେରିଲା ବେଳକୁ ମଠ ହୋଇଯାଏ । ମଦନ ବି ଆଗେ ତାଙ୍କ ସାଙ୍ଗରେ ଯାଉଥିଲା । ମାତ୍ର ତା'ର ଚାଲ୍‌ଚଳନ ବଢ଼ିଲାଣି । କାମ ବଢ଼ିଲାଣି । ତାକୁ ଭଲ ବି ଲାଗେ ନାହିଁ । ତେଣୁ ଆଉ ସେ ଯାଉନାହିଁ ।

ବୁଢା ଯୋଉବାଟେ ଯାଇ ଯୋଉବାଟେ ଫେରନ୍ତି ସେ କଥାକୁ ମଦନକୁ ଜଣା । ଠାକୁରାଣୀ ବର ମୂଳ ଦେଇ ଯୋଉ ବାଟଟି ନଈ ଆଡ଼କୁ ପଡ଼ିଚି, ଫଗୁ ସାମଲ ସେଇ ବାଟରେ ବୁଲୁଛନ୍ତି । ସଞ୍ଜହୋଇ ଆସୁଚି । ପଶ୍ଚିମ ଆକାଶ ନାଲି କଳା ବାଇଗଣି ରଙ୍ଗରେ ଭରପୂର । ଚଢେଇ ମାନେ କେଁ କଟର କରି ବସାକୁ ଫେରୁଛନ୍ତି । ଗୋରୁପଲ ଧୂଳି ଉଡ଼ାଇ ଏଇ ଫେରିଲେ । ଗାଁ ଦାଣ୍ଡ ତାଙ୍କ ଖୁରରୁ ଉଠିଥିବା ଧୂଳିରେ ଏଯାଏ଼ ପୂର୍ଣ୍ଣ ହୋଇ ରହିଚି । ସୁଲୁ ସୁଲିଆ ପବନ ବହୁଚି । ଫଗୁ ସାମଲ ମନ ଖୁସିରେ 'ବଡ଼ ମାୟାବୀ ଜୀବ ମୁହିଁ କାହାର' ଗୀତଟି ପଦେ ଗାଇ ନଈଆଡ଼େ ବୁଲୁଛନ୍ତି । ହଠାତ୍ ସାଏଁ କରି କଣ ଗୋଟାଏ ଉଡ଼ିଆସି ବୁଢାଙ୍କ ଖୁଆ ମୁଣ୍ଡରେ ବାଜିଲା । ବୁଢାତ 'ବୋଉଲୋ' ବୋଲି କହି ସେଇଠି ଟଳିପଡ଼ିଲେ ।

ଆଖ ପାଖରେ ଲୋକଥିଲେ । 'କଣ ହେଲା କଣ ହେଲା' ବୋଲି କହି ଦୌଡ଼ି ଆସିଲେ । ବୁଢାଙ୍କୁ ଧରା ଧରି କରି ବସାଇଲେ । ବୁଢା

ମାଟିରୁ କ'ଣ ଗୋଟାଏ ଗୋଟାଇ ପକାଇ ଅଣ୍ଟାରେ ଖୋଷିଦେଲେ । ସ୍ୱରଆଡ଼କୁ ଅନାଇ କାହାକୁ ଖୋଜିଲେ । ତା'ପରେ ଲୋକଙ୍କ ଆଡ଼କୁ ଅନାଇ କହିଲେ, ନାଗଟା ଚାନ୍ଦୁକୁ ଧରିପକାଇଲା, ମୁଣ୍ଡ ବୁଲାଇ ଦେବାରୁ ତଳେ ବସି ପଡ଼ିଥିଲି । ନାଗ ଉବାଟା ପଡ଼ିଯାଇଥିଲା । ତାକୁ ଗୋଟେଇ ଅଣ୍ଟାରେ ରଖିଲି ପରା । ଯାଅ, ତମେମାନେ ନିଜ ନିଜ କାମରେ ଯାଅ । ମତେ ଭଲ ଲାଗିଲେ, ମୁଁ ଗୋଟିଏ ଗୋଟିଏ ହୋଇ ଘରକୁ ଚାଲିଯିବି ।

ଜେଜେବାପା ଘରକୁ ଫେରିଲେ । କାହାକୁ କିଛି କହିଲେ ନାହିଁ । ଯୋଗଠି ହେଲେବି ଗୁରୁ ନିଜର ବିଦ୍ୟା ଚହ୍ନିପାରିବ ନାହିଁ ? ଜାରଣବର କୁକୁରର ମୁହଁ ଶରରେ ସିଇଁ ଦେଲା, ତାକୁ ପୁଣି ଦ୍ରୋଣ ଚହ୍ନିଲେ କି ନାହିଁ ? ରାତିରେ ସମସ୍ତେ ଶୋଇ ସାରିଲା ପରେ, ଜେଜେ ତାକୁ ଚୁପ୍ ଚୁପ୍ କହିଲେ—"ଅଥାନରେ ବାଜି ପଦ ମୁଁ ମରିଯାଇ ଥାଆନ୍ତି ।" କେତେଦିନ ଯାଏ, ମଦନ ଜେଜେଙ୍କ ଆଡ଼କୁ ମୁହଁ ଟେକି ଅନାଇ ପାରି ନାହିଁ ।

ଆଜି ଜେଜେବାପା ନାହାନ୍ତି । ଚାରିବର୍ଷ ହେବ, ତାଙ୍କର କାଳ ହୋଇ ଗଲାଣି । ହେଲେ ତାଙ୍କର ଶିଖେଇଥିବା ବିଦ୍ୟା ଆଜି ଦୁ'ଜଣଙ୍କର ଜୀବନ ରଖିଲା । ମଦନ ଆଖିକୁ ପାଣି ଆସିଯାଇଥିଲା ।



# ରାତିର ଅନ୍ଧାରରେ

ଭଗିର ଡାକରେ ମଦନର ଚେତା ଫେରିଲା । ଭଗି କହୁଥିଲା, "କରେ କଣ ଭାବୁଥିଲୁ କି ? ମୁଁ କେତେବେଳୁ ଡାକୁଚି, କିଛି ଜବାବ ଦେଉନୁ । ମଦନ ଲଜରା ହୋଇ କହିଲା, "ନା ମୁଁ ଭାବୁଥିଲି ଭାଲୁ ଢ'ଠାଙ୍କ କଥା ।"

ଭଗି କହିଲା—"ବଣ ଜଙ୍ଗଲରେ ବୁଲୁଥିବାବେଳେ, ସବୁଠୁ ଆଗ ଗୋଟିଏ କଥା ମନେ ରଖିବୁ । ମୋଟେ ଅନମନା ହେବୁ ନାହିଁ । କେତେବେଳେ କ'ଣ ଘଟିଯିବ, କିଏ ଜାଣେ । ଇଏତ ସହଜେ ରାତିବେଳ । ଆଜି ଠିକକରେ ଜାଣ ଆମ କଥା ସରିଥିଲା । ଭାଲୁ ଦ'ଠା ଯେ, ଉଇହୁଙ୍କା ଖୋଳୁ ଖୋଳୁ ବେଲଗଛଠାରେ ଚଢ଼ିଛନ୍ତି, ଏକଥା କିଏ କାହିଁ ଜାଣନ୍ତା ? ଗଛରେ ପାଚିଲା ବେଲ । ତାର ମହକରେ ଟାଣି ହୋଇ ଭାଲୁ ଯାଇଁ ଗଛ ଉପରେ ।

ମଦନ କହିଲା -"ଭାଲୁ ଯେ ଏମିତି ବେଲ ଖାଏ, ମୁଁ ଏଇ ପହିଲେ ଦେଖିଲି । ବେଲକୁ ବେଲରେ ବାଡ଼େଇ ଫଟେଇଦେଇ, ତା' ଭିତରେ ଥୋମଣି ପୂରାଇ ରାପୁ ରାପୁ କରି ଖାଇବାରେ ଲାଗିଲା ।"

ଭଗି କହିଲା- "କୋଉକାଳର ପୁରୁଣା ଗଛ । ପୋକ କାଟି ଝାଞ୍ଜରା କରି ଦେଇଛନ୍ତି । ଦ'ଠା ଭାଲୁର ଓଜନ ତ କମ୍ ନୁହେଁ । ସେଇ ଓଜନରେ ଗଛ ମଡ଼ ମଡ଼ ହୋଇ ଭାଙ୍ଗି ପଡ଼ିଲା । ଭାଲୁ ଗଛ ସାଙ୍ଗରେ ଡାଳ ତଳେ ପଡ଼ି ଉଠିଲାବେଳକୁ ଆମ ସାଙ୍ଗରେ ମୁହାଁମୁହିଁ ।

ମଦନ କହିଲା—"ମୋର ତ ସେତେବେଳକୁ ଫାକାଯୀ ଉଡ଼ିଲାଣି । ଅନ୍ଧାର ଭିତରେ ଗୋଟାଏ ଚାଲନ୍ତା କାଳିଆ ପାହାଡ଼ ଦେଖି, କିଏ ନ ଡରିବ କହ । ମୋ ମୁଣ୍ଡ ଆଜି କାମ କରୁ ନ ଥାଏ ।"

ମୁଣ୍ଡ କାମ ନ କଲେ କଣ ହେଲା, "ହାତ ଠିକ୍ କାମ କରୁଛି । ତା'ର ସିଏ ମୁଣି ଭିତରୁ ବାଟୁଳୀଖଣ୍ଡା ବାହାର କରିଛି । ଲକ୍ଷ କରୁଛି, ଆଉ ଠିକ୍ ବେଳରେ ଛାଡ଼ିବ ଦେଇଛି..." ଭଗି କହିଲା ।

ମଦନ କପାଳରୁ ଝାଳ ପୋଛୁ ପୋଛୁ କହିଲା—"ମୁଁ ଦେଖିଲି କଳାପାହାଡ଼ଟାଏ ଡମ ଉପରକୁ ଡେଇଁ ପଡ଼ିବାକୁ ଯାଉଛି । ଡମ ପଛରୁ ମୁଁ ବାଟୁଳୀ ଛାଡ଼ିଦେଲି । ସିଏ ଯାଇ ବାଜିଲା ଠିକ୍ ଭାଲୁର ବେକ ମୂଳରେ । କଟାଗଛ ଭଳି ଭାଲୁଟା ଓଲଟି ପଡ଼ିଲା । ଦେଖୁ ଦେଖୁ ଗୋଟାଏ ଭାଲୁ ଦୁ'ଟା ହୋଇଗଲେ । ତାଜୁବ୍ କଥା ।"

ଭଗି ଖୁଲୁ ଖୁଲୁ କହିଲା—"ଆରେ ବଡ଼ଟା ହଉଛି ମା ଭାଲୁ । ଛୋଟଟା ତା' ପିଲା । ଭାଲୁ ମା ତା' ଛୁଆକୁ ପିଠିରେ ଲାଉ କରିଥାଏ । ଗଲାବର୍ଷ ଗଞ୍ଜାମ ଜିଲ୍ଲାର ଜଉଗଡ଼ ଦେଖିବାକୁ ଯାଇଥିଲି । ସେଇଟା ତ ଗୋଟାଏ ପାହାଡ଼ । ପାହାଡ଼ ଉପରେ ବଣବେଳଟାରେ ଗୋଟାଏ ଭାଲୁ ଦୁଇଟା ହୋଇଯିବାର ଦେଖି ପଚାରିବାରୁ ସେଠାକାର ଶିକ୍ଷକ ମୋତେ ଏକଥା କହିଥିଲେ ।"

ହଠାତ୍ ଜଙ୍ଗଲ ଭିତରେ ଏକାସାଙ୍ଗରେ ଅନେକ ଚଢ଼େଇ କଚର ମିଚର କରି ବୋବାଇ ଉଠିଲେ । ଜଙ୍ଗଲଟା ଶବ୍ଦରେ ଭରିଗଲା । ଅନ୍ଧାର ବି ଟିକିଏ ପାତଳା ହୋଇ ଆସିଲା ଭଳି ଜଣାପଡୁଥାଏ । ଭଗି ଉପର ଆଡ଼କୁ ଅନାଇଲା । କହିଲା—"ଦେଖ, ଆଉ ଅଳ୍ପ ସମୟ ପରେ ସକାଳ ହୋଇଯିବ । ଆମେ ଏ ଭିତରେ ପ୍ରାୟ ପାଞ୍ଚ ଛଅ ଘଣ୍ଟା ଜଙ୍ଗଲ ଭିତରେ ବୁଲସାରିଲୁଣି । ଗଡ଼ ଏଠୁ ଆଉରି କେତେ ବାଟ, ତା' ବି ଜାଣିନୁ ।"

ମଦନ ତାକୁ ବୁଝାଇଲା ଭଳି କହିଲା—"ତମେ ଏମିତି ଅଥୟ ହୋଇ ପଡୁଛ କାହିଁକି ? ଆମେ ତ ରାତିରେ ମଉଜରେ ବୁଲୁ ନ ଥିଲୁ । ବାଟରେ ଯୋଉ ସବୁ ବିପଦ ପଡ଼ିଲା, ତାକୁ ପାଇଁ ସିଏ କୋଉ କମ୍ ! ଯାହା ହଉ, ଗୋଟାଏ କାମରେ ଆସିଲୁ ଯେତେବେଳେ, ତାକୁ ନ ସାରି ଆମେ ଘରକୁ ଫେରିବା ନାହିଁ ।

ଭଗି ଆଶ୍ଚର୍ଯ୍ୟ ହେଲା । ରାତିକ ଭିତରେ ମଦନର ବୟସ ଯେମିତି ଅନେକ ବଢ଼ିଯାଇଥିଲା । ସେ ଆଜି ପିଲା ଭଳି କଥା କହୁ ନ ଥିଲା । ଭଗି ପଚାରିଲା– "ଆଜି ତମ ଘରେ ବ୍ୟସ୍ତ ହେବେ ନାଇଁ ?"

କ୍ଷଣକ ଭିତରେ ମଦନ ଆଖିରେ ଭାସି ଉଠିଲା ତା' ଗେହ୍ଲା ଭଉଣୀ ମାନଙ୍କର ମୁହଁ । ଢାଣ୍ଡିପିଣ୍ଡାରେ ଖୁଣ୍ଟକୁ ଧରି ତା' ଆସିବା ବାଟକୁ ଅନାଇ ଠିଆ ହୋଇଛି । କାନ୍ଦି କାନ୍ଦି ତା' ବୋଉ ହାଲିଆ ହୋଇ ପଡ଼ିଲାଣି । ବାପା ଚୁପ୍ ଚାପ୍ ବସିଛନ୍ତି । ତେବେ ବେଶୀ ବେଳଯାଏ ସେ ଘର କଥା ଭାବିଲା ନାହିଁ । ଘର ଛାଡ଼ି ଯୋଉ କାମପାଇଁ ବାହାରକୁ ଆସିଛି; ସେଇ କାମ ଶେଷ କରିବା ହେଉଛି ଆଗ ।

ବାଟୁଳି ଖଡ଼ାମାଡ ଖାଇ ଚାଲୁ ଦୁଇଟା କେତେବେଳୁ ପଳାଇଲେଣି । ପାଣିଚିଆ ଅନ୍ଧାରରେ ବାଟ ଠଉରି କରି କରି ଏମାନେ ଆଗକୁ ଚାଲିଛନ୍ତି ।

ବଣ ଭିତରେ ଗଛ ସବୁ ଲଗାଲଗି ହୋଇ ଉଠିଛି । ତା' ଉପରକୁ ମାଡ଼ିଛି କେତେ ଜାତିର ବଣୁଆ ଲଟା । କୋଉ କାଳରୁ ଏ ଭିତରେ ମଣିଷର ପାଦ ପଡ଼ିନାହିଁ, କିଏ ଜାଣେ । ସେତେବେଳେ ସିଧା ହୋଇ ଚାଲିବାକୁ ଅସୁବିଧା ହେଉଛି । କୋଉଠି ବସି ବସି; କୋଉଠି ଗୁ ରୁଣ୍ଡି ଗୁ ରୁଣ୍ଡି, କୋଉଠି ଅବା ନଇଁ ନଇଁ, ଏ ଦୁହେଁ ଆଗକୁ ବଢ଼ିବାରେ ଲାଗିଛନ୍ତି । କେମିତି ହେଲେ ଗଡ଼ରେ ପହଞ୍ଚିବାକୁ ହେବ ।

କଣ୍ଟାଝଣ୍ଟା ଲାଗି ଦୁ'ଜଣଙ୍କର ଦେହରୁ କେତେ ଯାଗାରେ ଚିରି ହୋଇ ଗଲାଣି । ଯୋଉ ଚାଦର ଘୋଡ଼ହୋଇ ଆସିଥିଲେ, ସେ ବି ଠାଏ ଠାଏ ଚିରି ଗଲାଣି । ଲୁଗାପଟାର ଅବସ୍ଥା ସେମିତି । ଦେହରୁ ଧାର ଧାର ଝାଳ ବୋହିପଡ଼ୁଛି ।

କପାଳରୁ ଝାଳ ପୋଛୁ ପୋଛୁ ଭଗି କହିଲା ଆରେ ମଦନ ! ଆଉ ଟିକିକ ପରେ ତ ରାତି ପାହିଯିବ । ଆ, ଏଠି ଟିକିଏ ବସି ପଡ଼ିବା ।

ଫରସ୍ଥ ହୋଇଗଲେ, ତେଣିକି ବାଟ ଖୋଜ ଆଗେଇବାକୁ ବିଶେଷ କଷ୍ଟ ହେବ ନାହିଁ ।

ମଦନ ବି ଧାଳିଆ ହୋଇ ପଡ଼ିଲାଣି । ରାତସାରା ଜଙ୍ଗଲରେ ବୁଲି ବୁଲି ବର୍ଷାପାଣି ମାଡ଼ଖାଇ, ଦେହ ବି କେମିତି କସ୍‌ମସ୍ ଲାଗୁଚି । ସେ ଆଉ ମନାକଲା ନାହିଁ । ଟିକିଏ ଖୋଲା ଜାଗା ବାଛିନେଇ, ଖଣ୍ଡିଏ ପଥର ଉପରେ ଦୁ'ଜଣଯାକ ପାଖାପାଖି ହୋଇ ବସିଲେ ।

କିଛି ବେଳଯାଏ ଚୁପ୍ ରହି ଥକ୍‌କା ମାରିଲେ । ତା'ପରେ ମଦନ କହିଲା, "ଆଚ୍ଛା ଭଗିଦାଦା, ଆମେ ତ ଚୋରମାନଙ୍କ ପଛରେ ଧାଇଁଛେ, ସେମାନେ କେତେଜଣ, ତାଙ୍କ ପାଖରେ କଣ ହତିଆର ଅଛି, ଏ ସବୁ କିଛି ଜାଣିନେ । ଯଦି ସେମାନେ ଏକାସାଙ୍ଗରେ ଆମ ଉପରେ ଜୋର କରନ୍ତି, ତେବେ ଆମେ କ'ଣ କରିବା ?"

ଭଗି କହିଲା—ସେମାନେ ଠିକ୍ କେତେଜଣ, ସେ କଥା ମୁଁ ଭଲକରି ଜାଣିନାହିଁ । ତେବେ ମୋର ମନେ ହେଉଛି, ଚୋର ପାଞ୍ଚଜଣରୁ ଅଧିକ ହେବେନାହିଁ । ହାତହତିଆର ତ ନିଶ୍ଚେ ସେମାନଙ୍କ ପାଖରେ ଅଛି । ଠିକଣା ଜାଗାରେ ପହଞ୍ଚି, ଯାହା ଗୋଟାଏ ବେ୍ୟବସ୍ଥା କରିବା । ଆଗରୁ ଭାବି ଲାଭ କଣ ?"

ମଦନ କହିଲା—"ସେ କଥା ଅବଶ୍ୟ ଠିକ୍ । ଆଗତ ନଦେଖିଲା ପାଇଁ ବେଶିରେ ବାଟିବାରେ ଲାଭ କିଛି ନାହିଁ । ସେମାନେ ଯେତେଜଣ ହୁଅନ୍ତୁ, ଯାହା ହୁଅନ୍ତୁ, ଯେତେ ହେଲେ ବି ଚୋର ତ । ଆମ ଆଗରେ କେବେ ହେଲେ ମୁହାଁମୁହିଁ ହେବେ ନାହିଁ ।"

ଭଗି ଉତ୍ତର ଦେଲା—"ଠିକ୍ କହିଛୁ । ଚୋର ହୁଅନ୍ତୁ, ଅବା ଡ଼ାକୁ ହୁଅନ୍ତୁ, ସେମାନଙ୍କର ବି ଡ଼ର ଭୟ ଅଛି । ଅସଲରେ ସେମାନେ ଡ଼ରୁଆ । କେତେ ହେଲେ ଆମ ଆଗକୁ ଆସିବେ ନାହିଁ । ଆମକୁ ସେମାନଙ୍କୁ ଖୋଜି-ବାହାର କରିବାକୁ ପଡ଼ିବ ।"

ମଦନ ଉଠି ଠିଆ ହେଲା । ଚାରିଆଡ଼କୁ ଅନାଇଲା । ଧୀରେ ଧୀରେ ଫରସ୍ଥ ହେଉଚି । ଜଙ୍ଗଲ ଭିତରଟା ଅବଶ୍ୟ ଏବେ ବି ଅନ୍ଧାର ।

ତେବେ ତାର ଭିତରେ ଗଛଲତା ମାଟିପଥର ବାଉ ହେଉଛ । ଭଗି ପଚାରିଲା—ପିବା ?

ମଦନ କହିଲା "ହିଁ ବାପ ସେ, ଭାଇ ଶୋଷ ହେଲଣି । ପାଣି ଟିକିଏ ମିଳନ୍ତେ ପିଅନ୍ତୁ ।"

ଭଗି କହିଲା "ଏ ଘୋରଜଙ୍ଗଲ ଭିତରେ ପାଣି କୋଉଠି ମିଳିବ ! ଚାଲ ଆଉ ଟିକିଏ ଆଗକୁ ଯିବା । ଦେଖିବା କଥା । ଝରଣା ଫରଣା କୋଉଠି ମିଳିଯାଏ, ତେବେ ପାଣି ପିଇବୁ ।"

ମଦନ କହିଲା—"ଶୋଷରେ ଛାତି ଫାଟିଗଲା ଭଳି ଲାଗୁଛି । ପାଣି ପିଇବା ପାଇଁ ମନ ହେଲାଣି ଯେତେବେଳେ, ନ ପିଇ ଆଉ ଜମା ଆଗକୁ ଯାଇ ହେବ ନାହିଁ । ତମେ ଏଇଠି ବସ । ମୁଁ ଆଖପାଖ ଖୋଜି ଦେଖେଁ । ପାଣି ଟିକିଏ କୋଉଠି ହେଲେ ମିଳିଯିବ ।"

ଭଗି କହିଲା - "ବଡ଼ ଅଡୁଆରେ ପକେଇଲୁ । ହଉ, ଦେଖ୍ । ମିଳିଯାଏ ଯଦି ତୋ' କପାଳକୁ । ବେଶୀ ବାଟ ଯିବୁ ନାହିଁ । ମୁଁ ଏଇଠି ବସିଛି ।"

ମଦନ ଆଗେଇଲା । ଏଣିକି ତେଣିକି ଅନାଉଥାଏ । ମନେ ମନେ ଭାବୁଥାଏ । ମନ୍ଦାରଗଡ଼ ପାଖ ଦେଇ ବହିଯାଉଥିଲା ମନ୍ଦାକିନୀ ନଈ । ତେବେ ତ ଏ ଜଙ୍ଗଲରୁ ନଈ ବେଶୀ ବାଟ ହୋଇ ନ ଥିବ । ନଈ ପାଖରେ ପହଞ୍ଚିଗଲେ ପାଣି ପାଇଁ ଭାବନା କଣ ? କିନ୍ତୁ ନଈ ନାହିଁ । ମଦନର ଗୋଡ଼ ହାତ ଥରିବାକୁ ଆରମ୍ଭ କଲାଣି । ପାଣି ଶୋଷ ଯେ, ମଣିଷ ପାଇଁ ଏତେ ଦରକାର, ତା' ଏହାପୂର୍ବରୁ କେବେ ଜାଣି ନ ଥିଲା ।

ଆକାଶ ଆଉ ଟିକିଏ ସଫା ହୋଇ ଆସିଲଣି । ତେବେ ମେଘ ଘୋଟିଛି । ସଞ୍ଜ ହେଇ ହେଉ, ଆଉ କିଛି ବେଳ ଲାଗିବ ।

ହଠାତ୍ ମଦନର ଆଖିରେ ପଡ଼ିଲା, ଘୋଡ଼ାଏ ଜନ୍ତୁ ଗୋଡ଼ଅଗୋଡ଼ି ହୋଇ, ମାଇଁ ପାଖଦେଇ ଆଗକୁ ଧାଇଁ ପଳାଇଲେ । ବଣ ଭିତରେ

ଲୁଚିଗଲେ । ବାଲୁଆ ହେବେ ପରା । ତାଖଦେଙ୍କ ଉଡ଼ିଗଲା ବେଳେ ସେମାନଙ୍କ ଦେହରୁ ପାଣିଛିଟା ଆସି ମଦନ ଦେହରେ ବାଜିଲା । ମଦନ ଭାବିଲା —ବର୍ଷା ତ କେତେଦିନରୁ ବନ୍ଦ ହେଲାଣି । ଏମାନେ ତେବେ ଓଦା ହେଲେ କେମିତି ? ପାଣି ଭିତରେ ପଶି ଆସିଛନ୍ତି । ନିଶ୍ଚେ ପାଖରେ କୋଉଠି ପାଣି ଅଛି । ମଦନ ଆଗେଇ ଗଲା ।

ସେ ଯାହା ଭାବିଥିଲା, ତା' ଠିକ୍ । କିଛିବାଟ ଗଲାପରେ, ପାଣି ବହିଯିବାର ଶବ୍ଦ ତା' କାନରେ ପଡ଼ିଲା । ସେ ସେଇଆଡ଼କୁ ଗଲା । ଆଉ କିଛି ଆଗେଇ ଗଲା ପରେ ଦେଖିଲା, ଜଙ୍ଗଲକୁ ଦୁ'ଭାଗ କରି ଗୋଟାଏ ଓସାର ବଡ଼ ନାଳ ବହିଯାଉଛି । ବେଶ୍ ଗଭୀର । ଅଡ଼ଡ଼ ଉପରେ ଠିଆ ହୋଇ ତଳକୁ ଅନାଇଲେ ଅନେକ ଦୂରରେ କାଳିଚିଆ ପାଣିଧାର ଦେଖାଯାଉଛି । କିନ୍ତୁ ସେ ତଳକୁ ଓହ୍ଲାଇବ କେମିତି ?

ସେଥିପାଇଁ ଚିନ୍ତା ନାହିଁ । ପାଣିକୁ ଦେଖି ମଦନର ମନ ଖୁସି ହୋଇଗଲା । କିଛି ସମୟ ଆଗରୁ ବାଲୁଆ ଦୁ'ଟା ଏଇ ପାଣି ଭିତର ଦେଇ ଏପଟକୁ ଆସିଛନ୍ତି । ଅଡ଼ଡ଼ ଉଠି ଜଙ୍ଗଲ ଭିତରକୁ ଯାଇଛନ୍ତି । ବାଟ ନିଶ୍ଚୟ ଅଛି । ଖୋଜିଲେ ମିଳିବ ।

ମଦନ ଏପଟ ସେପଟ ହୋଇ ଅଡ଼ଡ଼ରୁ ଓହ୍ଲାଇବା ~~ଓହ୍ଲାଇବା~~ ସୀ ପାଇଁ ବାଟ ଖୋଜିବାକୁ ଲାଗିଲା । ହେଲେ ସେମିତି ବାଟ ତା' ଆଖିରେ ମୋଟେ ପଡ଼ିଲା ନାହିଁ । ଏଣେ ପାଣିକୁ ପାଖରେ ଦେଖି ତା'ର ଶୋଷ ବଢ଼ିଗଲା ଭଳି ଲାଗୁଥାଏ । ଯାଗାଏ ଦିଯାଗା କିଛିଏ ଢାଲୁଯାଗା ପାଇ, ସେ ତଳକୁ ଓହ୍ଲାଇବାକୁ ଚେଷ୍ଟା କଲା । ହେଲେ ପାରିଲା ନାହିଁ । ଗଲା ବର୍ଷରେ ବର୍ଷା ହୋଇ ଚକଟାମାଟି ଖସଡ଼ା ହୋଇ ରହିଛି । କିଛିଏ ଅଣ ହୁସିଆର ହେଲେ, ଏକାଥରେ ଯାଇ ପାତାଳରେ ।

ହତାଶ ହୋଇ ମଦନ ଠିଆହେଲା । କ'ଣ କରିବ ? କେମିତି ପହଞ୍ଚିବ ପାଣି ପାଖରେ ? ଆଉ ଦୁ'ପାହୁଣ୍ଡ ଆଗକୁ ଗଲାପରେ, ମଦନ ଦେଖିଲା, ଅଡ଼ଡ଼ ଉପରୁ ଗୋଟାଏ ସୁନାଝୁରି ଗଛ, ନାଳ ଭିତରକୁ ବଙ୍କେଇ ଯାଇଛି । ଫୁଲ ସମୟ । ଗଛରେ କାନ୍ଧ କାନ୍ଧ ହଳଦିଆ ଫୁଲ ଲଦି ହୋଇଛି । ହେଲେ ଏବେ ମଦନକୁ ଫୁଲ ଆଡ଼କୁ ଅନାଇବାକୁ

ବେଳ ନାହିଁ । ସେ ଗଛ ଉପରେ ପାଦଥାପି ଡାଳକୁ ଓହ୍ଲାଇବାକୁ ଚେଷ୍ଟାକଲା ।

ତା' ଆଖିରେ ପଡ଼ିଲା, ଗୋଟାଏ ବଣୁଆ ଲଟା, ଗଛରୁ ତଳ ଆଡ଼କୁ ଝୁଲି ପଡ଼ିଛି । କେତେ ବାଟ ଯାଇଛି, ପାଣି ପାଖରେ ପହଞ୍ଚିଛି କି ନାହିଁ, ଏସବୁ ବିଚାର କରିବାକୁ ବେଳନାହିଁ । ସେଇଆକୁ ଧରି ତଳକୁ ଓହ୍ଲାଇବାକୁ ସେ ଠିକ୍ କରିନେଲା । ଲଟା ତା' ଭାର ସହିବକି ନାହିଁ, ଏକଥା ପରୀକ୍ଷା କରି ଦେଖିବାକୁ ବି ବେଳ ନାହିଁ । ମଦନ ଲଟାକୁ ଧରି ଭିତରକୁ ଝୁଲି ପଡ଼ିଲା । ତରତର କରି ତଳଆଡ଼କୁ ଓହ୍ଲାଇବାକୁ ଲାଗିଲା । ଦଉଡ଼ିରେ ଚଢ଼ିବାର ଅଭ୍ୟାସ ତା'ର ଅଛି । ତେଣୁ ବିଶେଷ ଅସୁବିଧା ହେଲା ନାହିଁ । ତେବେ ମଝିରେ ମଝିରେ ହାତ ଖସି ଯାଉଥାଏ । ମଦନ ତଥାପି ତଳକୁ ଓହ୍ଲାଇ ଚାଲିଥାଏ ।

ହଠାତ୍ ଗୋଟାଏ ମଟ ମଟ ଶବ୍ଦ ହେଲା । କିଛି ବୁଝିବା ପୂର୍ବରୁ ମଦନ ଖାଇ ଭିତରକୁ ଖସି ପଡ଼ିଲା । ଚେତା ହରାଇ ପାଣି କୂଳରେ ପଡ଼ି ରହିଲା ।



# ବୁଝି ବିଚାର କାମକଲେ

କେତେବେଳ ପରେ ମଦନ ଆଖି ମେଲାଇ ଚାହିଁଲା । ପ୍ରଥମେ କିଛି ବୁଝି ପାରିଲା ନାହିଁ । କେଉଁଠି ଅଛି, କେମିତି ଅଛି, କାହିଁକି ଏଠି ବାଲି ଉପରେ ଶୋଇଛି, କିଛି ଜାଣିପାରିଲା ନାହିଁ । ବଲ ବଲ କରି ଚାରିଆଡ଼କୁ ଅନାଇଲା । ଦେଖିଲା, ସୁନା ରଙ୍ଗର ଖରାରେ ଚାରିଆଡ଼ ଝଲମଲ କରୁଛି । ଦୂରରେ ଗୋଟିଏ ଉଚ୍ଚ କୂଦ ଉପରେ ସଫା ଦେଖା-ଯାଉଛି, ଗୋଟିଏ ଦରଭଙ୍ଗା ଖିଲାଣ ।

ମଦନର ଏଥର ସବୁ ମନେ ପଡ଼ିଗଲା । ଏଇ ତେବେ ସେଇ ମନ୍ଦାର ଗଡ଼ । ଏହାରି ଭିତରେ ପଶି ଚୋରଙ୍କୁ ଖୋଜିବାକୁ ସେ ଆଉ ଭଗିଦାଦା କାଲି ରାତିରେ ଘରୁ ବାହାରି ଥିଲେ । ତା' ମନ ଖୁସିରେ ନାଚି ଉଠିଲା । ଗଡ଼ ପାଖରେ ତା'ହେଲେ ସେମାନେ ଶେଷରେ ପହଞ୍ଚି ପାରିଛନ୍ତି ।

ହଠାତ୍ ତା' ମନ ଖରାପ ହୋଇଗଲା । ସେତ ଏଠି ଏମିତି ପଡ଼ିଛି, ଭଗିଦାଦା ତାକୁ ତେଣେ ଖୋଜୁଥିବେ । ସେ ଏଠି ଅଛି ବୋଲି ସିଏ ବା ଜାଣିବେ କେମିତି ? ମଦନ ଚାରିଆଡ଼କୁ ଅନାଇଲା । ମଙ୍ଗୀରାମକୁ ମନେ ମନେ ଖୋଜିଲା । ମଙ୍ଗୀ ଆଖି ପାଖରେ କେଉଁଠି ଦେଖା ପଡ଼ିଲା ନାହିଁ । ମଦନର ମନ ଭାରି ଦୁଃଖ ହେଲା । ଏମିତି ବେଳରେ ମଙ୍ଗୀ ତାକୁ ଛାଡ଼ି ଚାଲିଗଲା । କେଡ଼େ ପିଲାଟି ବନରୁ କେତେ ଆଦରରେ ତାକୁ ବଢ଼େଇ ଆଣିଥିଲା— ସେ ସବୁ ଭୁଲିଗଲା । ହଃ ଯେତେ ହେଲେ ପଶୁ ଜନ୍ତୁ । ତା'ର କଣ ବୁଦ୍ଧି ଅଛି ନା ବିବେକ ଅଛି ।

ମଦନ ଏଥର ଧୀରେ ଧୀରେ ଉଠି ବସିଲା । ଚାରି ଆଡ଼କୁ ଅନାଇଲା । ଦେଖିଲା ଅଳପ ଦୂରରେ ସରୁଆ ପାଣିଧାରଟିଏ ବାଲି

କେଉଁରେ ନାଚ ନାଚ, ସିରିସିରି ହୋଇ ବହି ଯାଉଚ । ପାଣି ଉପରେ ଖସ ଏ ଯାଏଁ ପଡ଼ ନାହିଁ । ତେବେ ସବୁ ରୂପାପାତିଆ ଟିଏ ଭଳି ପାଣି ଝକଝକ କରୁଚ ।

ମଦନର ଗତ କଥା ମନେ ପଡ଼ିଲା । ଶୋଷରେ ଆଉଟୁ ପାଉଟୁ ହୋଇ ସେ ପାଣି ଖୋଜିବାକୁ ବାହାରି ଥିଲା । ସୁନାସି ଗଛରୁ ଓହଳ ଥିବା ଲଟା ଧରି ଖାଇ ଭିତରକୁ ଓହ୍ଲାଉ ଥିଲା । ତା'ପର ଘଟଣା ତା'ର କିଛି ମନେ ନାହିଁ । ଦେଖିଲା—ଅଳପ ଦୂରରେ ସୁନାସି ଡାଳ ଖଣ୍ଡେ ଭାଙ୍ଗି ଯାଇ ପଡ଼ିଚ । ତା'ସାଙ୍ଗରେ ଖଣ୍ଡେ ଛିଣ୍ଡା ଲଟା । ଏଥର ମଦନ ସବୁ ବୁଝି ପାରିଲା । ଲଟା ଛିଣ୍ଡିଯିବାରୁ ସେ ତଳକୁ ଖସି ପଡ଼ିଚ । ହୁଏତ ମାଟିଠୁଁ ଖୁବ୍ ବେଶୀ ଉଚ୍ଚରେ ନ ଥିଲା । ଏଣେ ତଳେ ବି ବହଳ-ବାଲି । ତେଣୁ ତା'ର ଦେହରେ ଆଞ୍ଚୁଡ଼ା ଦାଗଟିଏ ବି ହୋଇ ନାହିଁ । ଶୋଷ ହେତୁରୁ ହୁଏତ ସେ ଚେତା ହରେଇ ଥିଲା । ଯାହା ହଉ, ଭଗବାନ ପୁଣି ଥରେ ତାକୁ ବଞ୍ଚେଇ ଦେଲେ ।

ମଦନ ଏଥର ଧୀରେ ଧୀରେ ଉଠି ଠିଆ ହେଲା । ଛୋଟେଇ ଛୋଟେଇ ପାଣିଧାର ପାଖକୁ ଗଲା । ପାଣି ଭାରି ସଫା ଆଉ ଶୀତଳ । ପାଣି ତଳର ବାଲି ଦେଖାଯାଉଚ । ପାଣିରେ ଝେଲୁଛନ୍ତି ଗ୍ଲେଟ ଗ୍ଲେଟ ଦଣ୍ଡିକିଆ—ମାଛ । ଧାର ସିନା ସରୁ—ହେଲେ ସୁଅ ଭାରି ଜୋର । ମଦନ ଜାଣେ, ପାହାଡ଼ିଆ ନଈ ବା ଝରଣାର ସୁଅ ଏମିତି ଟାଣ ହୁଏ । ବେଶୀ-ପାଣିତ ନାହିଁ । ଖୁସିରେ ଆର ପଟକୁ ଯାଇହେବ । ପାଣିକୁ ଚାହିଁ ମଦନର ମନ ଖୁସି ହୋଇଗଲା ।

ସେ ପାଣି ଭିତରେ ପଶି ଆଗ ଭଲ କରି ମୁହଁ ହାତ ଧୋଇ-ପକାଇଲା । ତା'ପରେ ପାଣିଧାରରେ ମୁହଁ ଲଗାଇ ମନବୋଧ କରି ପେଟେ ପାଣି ପିଇଲା । ତାକୁ ଭାରି ଆରାମ ଲାଗୁଥାଏ ।

ପାଣି ଭିତରୁ ବାହାରି ଏଥର ସେ ପଡ଼ିଥିବା ଜାଗାକୁ ଫେରି ଆସିଲା । ତଳେ ଠିଆ ହୋଇ ଅତଡ଼ ଉପରକୁ ଅନାଇଲା । ହଳଦିଆ ରଙ୍ଗର ଅସୁମାରି ଫୁଲରେ ସୁନାରୀ ଗଛ ଛାଇ ଯାଇଚ । ବାସନା ନାହିଁ

ସିନା—ହେଲେ ଏଫୁଲ ଦେଖିବାକୁ ଭାରି ସୁନ୍ଦର । ମଦନକୁ ବହୁତ ଭଲ ଲାଗେ ।'

ମଦନର ମନେ ପଡ଼ିଲା— କିଛି ଗୋଟାଏ କରିବାକୁ ପଡ଼ିବ । ଖାଲି ଖାଲି ଏମିତି ଏଠି କେତେ ବେଳଯାଏ ଠିଆ ହୋଇ ରହିବ ? ସମସ୍ତ ବିତି ଚାଲି ଯାଉଛି । ଭଗିଦାଦା କୋଉଠି ରହିଲେ । ଆହା— ମଉଜଣିଆ ସନ୍ଧ ପାଖରେ ଥାଆନ୍ତା, ତେବେ ସେ ନିଜକୁ ଏତେ ଏକୁଟିଆ ମନେ କରନ୍ତା ନାହିଁ ।

ଏତିକିବେଳେ ଅଟଡ଼ ଉପରୁ କିଏ ତା'ନା' ଧରି ଡ଼ାକିଲା । ଉପରକୁ ଚାହିଁ ସବୁ ଭୁଲି ଯାଇ ମଦନ ବଡ଼ ପାଟିରେ ଡ଼ାକ—ପକାଇଲା ଦାଦା ! ଭଗିଦାଦା !

ଭଗି ହାତ ଠାରି ତାକୁ ଚୁପ୍ ହେବାକୁ କହିଲା । ମଦନ ଚଞ୍ଚଳ ଅଟଡ଼ ତଳକୁ ଚାଲିଗଲା । ଭଗି ତଳକୁ ଓହ୍ଲାଇ ବାକୁ ବାଟ ଖୋଜୁଥାଏ ଖସଡ଼ା ଅଟଡ଼ ଛିଡ଼ା ହୋଇ ଠିଆ ହୋଇଛି । ସେଥିରେ ପୁଣି ନାନା ପ୍ରକାର ବଣବୁଦା ଲତାପତ୍ର ଭର୍ତ୍ତି ହୋଇ ରହିଛି । ଭଗି ଠାଏ ଦିଠା ପରୀକ୍ଷା କରି ଦେଖିଲାଣି । ଗୋଡ଼ ଖସିଲେ ଏକେବାରେ ଆସି ତଳେ । ହାତ ଗୋଡ଼ ଭାଙ୍ଗିବା ବିଚିତ୍ର ନୁହେଁ । ମଦନ, ଭଗି ଯେଉଁଠି ଠିଆ ହୋଇ ଥିଲା, ତା, ତଳକୁ ଗଲା । କହିଲା, ଭଗିଦାଦା ! ମୁଁ ଗୋଟାଏ ବାଟ କରୁଚି । ମୋ ପାଖରେ ସରୁ ଦଉଡ଼ି ଅଛି । ମୁଁ ତାକୁ ଉପରକୁ ପକାଉଛି । ତମେ ଉପରେ ତା'ର ଗୋଟାଏ ମୁଣ୍ଡ ଏଇ ସୁନାରି ଗଛରେ ବାନ୍ଧିଦିଅ । ତା'ପରେ ଦଉଡ଼ି—ଧରି ତଳକୁ ଓହ୍ଲାଇ ଆସ ।

ଭଗିର ମୁହଁ ଖୁସିରେ ଭରିଗଲା । ସେ କହିଲା—ହଉପକା । ମଦନ କାନ୍ଧରେ ତା'ମୁଣି ଏବେ ବି ଝୁଲୁଚି । ହାତପୁରାଇ ସେ ତା' ଭିତରୁ ଦଉଡ଼ି ବାହାର କଲା । ଗୋଟିଏ ମୁଣ୍ଡରେ ବଡ଼ବାଳି ଗରଡ଼ାଟିଏ ବାନ୍ଧି ଦେଲା । ତା'ପରେ ସେଇଆକୁ ଉପରକୁ ଫିଙ୍ଗିଦେଲା । ଭଗି ତିଆରି ହୋଇ ଠିଆ ହୋଇଥିଲା । ଖପ୍ କରି ଦଉଡ଼ିକୁ ଧରି ପକାଇଲା । ମଦନ ସେମିତି ଉପରକୁ ଅନାଇ ଠିଆ ହୋଇଥାଏ ।

ଭଗି ଦଉଡ଼ିକୁ ଧରି ଦଣ୍ଡେ ଚିନ୍ତା କଲା । ତା'ପରେ ତା' ନିଜ ମୁଣିରୁ ବାହାର କଲା ଗୋଟିଏ ଅଙ୍କୁଶୀ । ସେଇଟିକୁ ଦଉଡ଼ିରେ ବାନ୍ଧିଦେଲା । ସୁନାର ଗଛର ଗୋଟିଏ ମୋଟା ଡାଳରେ ଅଙ୍କୁଶୀକୁ ଲଗାଇ ଦେଇ ଦୁଇତିନିଥର ଦଉଡ଼ିକୁ ଟାଣି ପରୀକ୍ଷା କଲା । ତାପରେ କରି ଉହଳରେ ମାଙ୍କଡ ଝୁଲିଲା ପରି ଝୁଲି ପଡ଼ିଲା । ତରତର ହୋଇ ଓହ୍ଲାଇ ସେ ଦଣ୍ଡକରେ ମଦନ ପାଖରେ ଆସି ଠିଆ ହୋଇ ଗଲା । ମଦନର ଖୁସି କହିଲେ ନସରେ । ଭଗି ଆଗ ମଦନକୁ ଆଉଁସି ପକାଇଲା । କହିଲା, ତୋର କଷ୍ଟ ହୋଇ ନାହିଁତ ।

ମଦନ ହସି ପକାଇଲା । କହିଲା "ପାଣି ଖୋଜି ଖୋଜି ଶେଷରେ ଏଇଠି ଆସି ପହଞ୍ଚିଛୁ । ତମକୁ ନଦେଖି ଭାରି ଡର ଲାଗୁଥିଲା । ଆଉ ମୋର ହବ କଣ ?"

ଭଗି କହିଲା—"ତୁ ଆସିଲା ବେଳୁ ମୋର ବେଳଯେ କେମିତି କଟିଛି, ତା' ଯିଏ ଧନ ସନ୍ତ କରୁଛି ସେଇ ଜାଣେ । ନାହିଁ ନାହିଁ ତୋର ଯଦି ଗୋଟାଏ କଷ୍ଟ ହୋଇଯାଇ ଥାଆନ୍ତା, ମୁଁ ଭାଇ ଭାଉଜଙ୍କୁ ମୁହଁ ଦେଖାଇଥାନ୍ତି କେମିତି ?"

ମଦନ ଦୁଃଖରେ କହିଲା "ସେ କଥା ପରେ ଭାବିବା । ଜାଣିଛ, ଦାଦା, ମଞ୍ଜୁଷାଟା ଏ ଅନ୍ଧାର ଭିତରେ କୋଉଠି ରହିଗଲା—ତା' ପାଇଁ ମନଟା ବିକଳ ହେଉଛି ।"

ଏଥର ଭଗି ହସିଲା, କହିଲା —"ମଞ୍ଜୁଷା ତ ମତେ ବାଟ କାଢ଼ିକରି ଏଠିକି ଆଣିଛି । ତୁ ଶୁଣି ଆସିଲୁ । ତୋର ଖୋଜ ନପାଇ, ମୁଁ ବେସ୍ତ ହେଲାବେଳକୁ ମଞ୍ଜୁଷା ଯାଇଁ ହାଜର । ମୋ ଲୁଗାକୁ ଟାଣି ଆଗେ ଆଗେ ଦଉଡ଼ିଲା । ମୁଁ ଜାଣିଗଲି, ତୋର ଗୋଟାଏ କଷ୍ଟ ହୋଇଛି । ସେଇ ମୋତେ ବାଟ କଢ଼େଇ ଏଠିକି ଆଣିଲା ।" ଏତିକି କହି ଭଗି ତା ମୁଣି ଭିତରୁ ମଞ୍ଜୁଷାକୁ ବାହାର କଲା । ମଦନ ତାକୁ ହାତରେ ଧରି ଆଗ ବହେ ଆଉଁସି ପକାଇଲା । ମଞ୍ଜୁଷା ଖାଉନ୍ଦର ଆଦର ବୁଝିଲା । ମନ ଖୁସିରେ ଘୁଡୁ ଘୁଡୁ ହେଉଥାଏ ଆଉ ମିଠି ମିଠି କରି ଶୁଙ୍ଘୁଥାଏ ।

ଉଗି କହିଲା—"ମଉଜୀ ଆଉ ଗୋଟାଏ କାମ କରିଛି ।" "ଏତିକି କହି ଗୋଟିଏ ମଇଳା ଗେଞ୍ଜି ବାହାର କଲା । କହିଲା—"ଦେଖ୍, ଏଥିରେ ରକ୍ତଲାଗି ଶୁଖିଯାଇଛି । ମଉଜୀ ଏଇଟାକୁ ପାଇ ମୋ ପାଖକୁ ଆଣିଥିଲା । ମୋର କଣ ମନେ ହେଉଛି, ଜାଣୁ ! ଯୋଉ ଲୋକର ମୋ ହାତରେ ମାଡ଼ ଖାଇ ଘାଇଲା ହୋଇଥିଲା, ଏ ଗେଞ୍ଜି ତାର । ନହେଲେ ଏ ଜଙ୍ଗଲରେ ଗେଞ୍ଜି ଆସନ୍ତା କୁଆଡ଼ୁ ?"

ମଦନ କହିଲା—"ତା' ମାନେ ଆମେ ଠିକଣା ବାଟରେ ଆଗେଇଛେ । ହଉ, ବେଳ ବଢ଼ୁଛି । ଆମକୁ ଏଥର ଶୀଘ୍ର ଗଡ଼ ଭିତରକୁ ପଶିବାକୁ ହେବ ।"

ଉଗି କହିଲା—"ତା' ସତ । ତେବେ ପହିଲେ ନିତ୍ୟକର୍ମ ସାରି ଦେବା । କିଛି ଖାଇବା । ତା' ପରେ ବାହାରିବା । ସେଠି କ'ଣ ହବ କିଏ ଜାଣେ ।"

ମଦନ କହିଲା—"ଖାଇବା କହୁଚୁ ଯେ, ଏ ବଣ ଭିତରେ କୋଉଠୁ କଣ ପାଇବା ?"

ଉଗି କହିଲା, "ତୁ ଚିନ୍ତା କରନା । ମୋ ସାଙ୍ଗରେ କିଛି ଖାଇବା ଚିଜ ଅଛି । ମୋ ବୁଢ଼ା ବାପା କହନ୍ତି, କୋଉଠି ଗଲେ ମୋଟେ ବାନ୍ଧିଥିବୁ । ଆସିଲା ବେଳେ ଯାହା ହାତରେ ପଡ଼ିଲା ନେଇ ଆସିଚି ।"

ମଦନ କହିଲା—"ତେବେ ଆଉ ଡେରି କରିବା ନାହିଁ । ମଦନ ଆଉ ଉଗି ଝାଡ଼ା ଝପଟ ସାରି ମୁହଁ ଧୋଇ ପକାଇଲେ । ଉଗି ମୁଣିରୁ ବାହାରିଲା ପେଣାଏ ପାଚିଲା କଦଳୀ, ଖଣ୍ଡେ ଛେନା ଆଉ ସେରେ ହବ ଚୂଡ଼ା । କଦଳୀ ବାସନାରେ ମଦନର ମନ ଖୁସି ହୋଇଗଲା । ମଉଜୀ ବି ଚଞ୍ଚଳ ହୋଇ ଉଠିଲା । ମଦନ କହିଲା, "ରହ ଆଗ ଚକଟା ହଉ । ତା' ପରେ ଯାଇନା ।" ଅଡ଼ୁ ତଳକୁ ଘଞ୍ଚ ବଣ ସାରୁର ଜଙ୍ଗଲ । ମଦନ ଦୁଇଟା ବଡ଼ ବଡ଼ ପତ୍ର ଛିଣ୍ଡେଇ ଆଣିଲା । ପତ୍ର ପୁଡ଼ାରେ ପାଣି ଆଣି ଚୂଡ଼ା ଭିଜେଇ ବଢ଼ିଆ ଚକଟା ଟାଏ କଲା । ବାଣ୍ଟିଲାଏ ମଉଜୀ

ଆଗରେ ଦେଇଥିଲେ ଦୁଇଜଣ ଯାକ ଖାଇ ବସିଲେ । ଖାଉ ଖାଉ ମଦନ କହିଲା "ଆଇଁଷ ନହେଲେ ଏଇଠାକୁ ଭାତ ରୁଚେ ନାହିଁ । ଆଜ ଦେଖ, କେମିତି ଗାଉଁ ଗାଉଁ କରି ଖାଇ ଯାଉଛି ।"

ଖାଇସାରିଲା ପରେ ଦୁହେଁ ଝରଣା ଭିତରକୁ ଯାଇଁ ପେଟେ ପେଟେ ପାଣି ପିଇଲେ । ଏଥର ଦୁଇଜଣଙ୍କୁ ବେଶ୍ ଭଲ ଲାଗିଲା । ପାଣି ଭିତରେ ପଶି ସେମାନେ ଆରପଟକୁ ଚାଲିଗଲେ । ଏପଟ ଭଳି ସେପଟେ ବି ସେମିତି ଖାଲ ଅଛି । ତେବେ ବନ ଆଳୁଅରେ ଉପରକୁ ଉଠିବାକୁ ସେମିତି ଅସୁବିଧା ହେଲା ନାହିଁ । ଆଙ୍କୁଶୀ ଲଗା ବାଉଁଶରେ ସେମାନେ କିଛି ସମୟ ଭିତରେ ଅଣ୍ଡା ଉପରେ ଠିଆ ହେଲେ । ଆଗରେ ଦେଖାଯାଉଛି ମହାର ଗଡ଼ର ଭଙ୍ଗା ଶିଳାଣ । ସେଇଆଡ଼େ ଅନାଇ ଦୁହେଁ ଜଙ୍ଗଲ ଭିତରେ ବାଟ ଖୋଜି ଖୋଜି ଚାଲିଲେ ।

ଏଥର ଜଙ୍ଗଲ ଆଉ ସେତେ ଘଞ୍ଚ ଜଣା ପଡୁ ନଥିଲା । ଗୋଟିଏ ସରୁ ପାଦଚଲା ରାସ୍ତା ବି ମିଳି ଯାଇଥିଲା । ଠାଏ ଭଗି ଠିଆ ହୋଇପଡ଼ି ତଳ ଆଡ଼କୁ ଅନାଇ କଣ ଦେଖିବାକୁ ଲାଗିଲା । ମଦନ ବି ଠିଆ ହୋଇ ପଡ଼ି ପଚାରିଲା—କଣ ଦେଖୁଛ ?

ଭଗି ତାକୁ ପାଖକୁ ଡାକିଲା ତଳ ଆଡ଼କୁ ଅନାଇ କହିଲା—ଦେଖ୍, ମଣିଷର ପାଦ ଚିହ୍ନ । ମଦନ ଦେଖିଲା । ଗତ ରାତିର ବର୍ଷାରେ ପାଦଚିହ୍ନ ସବୁ ଧୋଇ ହୋଇଯାଇ ଥିଲେ ବି ଚିହ୍ନିବାରେ କିଛି ଅସୁବିଧା ହେଉ ନାହିଁ ।

ଭଗି କହିଲା—ଦେଖିଲୁଟି । ଏ ବଣଭିତରକୁ ତେବେ ମଣିଷର ଗତାଗତ ଅଛି । ବ୍ଲେରଛଡ଼ା ଭଲ ମଣିଷ ଏ ଭିତରକୁ କାହିଁକି ଆସନ୍ତା ?

ଦୁଇଜଣଯାକ ଆଗେଇ ଚାଲିଲେ । ମଦନ ପଚାରିଲା—ଗଡ଼ ଭିତର ଅବସ୍ଥା ଏବେ କେମିତି ଥିବ ତମେ ଜାଣିଚ ?

ଭଗି ଉତ୍ତର ଦେଲା—ହଜାର ହଜାର ବର୍ଷ ତଳେ ରାଜା ସିଦ୍ଧ-ଭାନୁ ଏ ଗଡ଼ ବନାଇଥିଲେ । ମହାରବୋଲି ଜଣେ ଋଷିଥିଲେ ତାଙ୍କର

ଶୁଣ । ଶୁଣିଛି ଗଡ଼ ଭିତରେ ଥିଲା ବଡ଼ଠ ପୋଖରୀଟିଏ—ତା'ଭିତରେ ଉଠିଥିଲା ଗୋଟିଏ ସୁନ୍ଦର ଖମ୍ବ । ଖମ୍ବର ଥିଲା ପୁଣି ଆଚମ୍ବିତ ଗୁଣ । ସେ ଖମ୍ବକୁ ଯେଉଁଏ ଛୁଇଁଗଲେ, ଦେହରୁ ପାପବିଷ ଦୂର ହୋଇ ଯାଉଥିଲା । ପୁଣି ମନରୁ ଭୟ, ଦେହରୁ ଦୁର୍ବଳତା ସବୁ ଚାଲି ଯାଉ ଥିଲା । ମନ୍ଦାର ରାଜ୍ୟରେ କେହି ପାପ କାମୁଡ଼ାରେ ମରୁ ନଥିଲେ ।

ମଦନ କହିଲା—ଭାରି ଆଶ୍ଚର୍ଯ୍ୟ କଥା ତ ! ବାଟଚାଲୁ ଚାଲୁ ଭଗି କହିଲା, କଅଣ ସେତିକି । ମନ୍ଦାର ଋଷି ରାଜାଙ୍କୁ ଗୋଟିଏ ସୁନ୍ଦର ମୂର୍ତ୍ତି ଦେଇଥିଲେ । କହିଥିଲେ, ଦେଖ୍ ବାବୁ ! ତୁ ରାଜା ହେଲୁ । ତେବେ ଜାଣି ହେଉ ବା ଅଜଣାରେ ହେଉ, ଯଦି କିଛି ଅନ୍ୟାୟ କରିବୁ, ତେବେ ଏ ମୂର୍ତ୍ତି ଆଖିରେ ଲୁହ ଆସିଯିବ । ରାଜା ମିହିରଭାନୁ ମୂର୍ତ୍ତିଟିକୁ ଗଡ଼ ମନ୍ଦିରେ ଗୋଟିଏ ଚଉତରା ଉପରେ ବସାଇ ଥିଲେ । ନଜେ କେବେ ଅନ୍ୟାୟ କରୁନଥିଲେ । ଲୋକେ ବେଶ୍ ସୁଖ ଶାନ୍ତିରେ ଥିଲେ । ଗଡ଼ ଭିତରେ ଯୋଉ ବଡ଼ ପୋଖରୀ ଥିବା କଥା ମୁଁ କହିଲି, ସେ ପୋଖରୀର ପାଣି ଥିଲା ଅମୃତ ଭଳି । ଋଷିଙ୍କ କଲ୍ୟାଣରୁ, ସେ ପାଣି ପିଇଦେଲେ, ସବୁ ପ୍ରକାରର ରୋଗ ଦୂର ହେଉଥିଲା, ଘୁଙ୍ଗା କଥା କହି ପାରୁଥିଲା ; କାଲ ଶୁଣି ପାରୁ ଥିଲା—ଆଉ ଅନ୍ଧକୁ ଦେଖା ଯାଉଥିଲା ।

ମଦନ ପଚାରିଲା—ସେ ପୋଖରୀ ତ ଏବେ ବି ଥିବ । ଆମେ ଯଦି ଲୋକଙ୍କୁ ଏକଥା କହନ୍ତେ, ତେବେ ସେମାନଙ୍କର କେତେ ଉପକାର ହୁଅନ୍ତା ।

ଭଗି କହିଲା – ପୋଖରୀ ହୁଏତ ଥିବ । ତେବେ ତା'ର ପାଣିରେ ଆଉ ସେମିତି ଗୁଣ ଥିଲେ ତ ! ମୁଁ ଶୁଣିଛି ପାପ ବେଶୀ ହେବାରୁ, ପାଣିର ସେ ଗୁଣ ନଷ୍ଟ ହୋଇ ଯାଇଛି । ସେ ମୂର୍ତ୍ତି କି ସେ ଖମ୍ବ ବି ଆଉ ନାହିଁ ।



## କେତେଦୂରେ ଗଡ଼ ?

ଏ ଭିତରେ ସେମାନେ ଅନେକ ବାଟ ଚାଲି ଆସିଥିଲେ । ଜଙ୍ଗଲ ଭିତରେ କେବଳ ଚଢ଼େଇଙ୍କ କଚର ମିଚର ଶବ୍ଦ ଛଡ଼ା ଚାରିଆଡ଼ ନଶୁନ୍ । ଦିନ ହୋଇ ଥିବାରୁ କଥାବାର୍ତ୍ତା କରି ଯିବାରେ ଅସୁବିଧା କିଛି ନ ଥିଲା । ତେବେ ଏମାନେ ଚାରିଆଡ଼କୁ ଅନାଇ ଅନାଇ ଯାଉଥାଆନ୍ତି । ବେଶୀ ବଡ଼ ପାଟିକରୁନଥାନ୍ତି । ମଉଜୀ ରାମ ଆରାମରେ ମଦନର କାନ୍ଧରେ ବସି ଝୁମାଉଥାଏ ।

ଭଗି ଏଥର ପୁଣି ଆରମ୍ଭ କଲା—ଶୁଣିଛ ସେଇ ଗଡ଼ ପୋଖରୀ ଭିତରେ ଥିଲା ଗୋଟିଏ ଅମୁହାଁ ଦେଉଳ । କାର୍ତ୍ତିକ ଅମାବାସ୍ୟା ରାତି ଅଧରେ ଆପେ ଆପେ ଗୋଟିଏ ଡଙ୍ଗା ପାଣି– ଉପରକୁ ଭାସି ଉଠୁଥିଲା । ରାଜା ମିହଭାନୁ ସେ ଡଙ୍ଗାରେ ବସି ପାତାଳେଶ୍ୱରୀ ଠାକୁରାଣୀଙ୍କୁ ପୂଜା ଦେବାକୁ ଯାଉଥିଲେ ।

ମଦନ ପଚାରିଲା- ତମେ ଏତେ ସବୁ କଥା ଜାଣିଲ କେମିତି ?

ଭଗି କହିଲା—ଶୁଣିଛ, ଆମ ଗାଁର ଶିରିଆ ବୁଢ଼ା କଥା ତୋର ମନେ ଅଛି ? ଗଲା ସନ ଯାହାର କାଳ ହେଲା ମ । ସେଇ ଗଡ଼ ବିଷୟରେ କେତେ କଥା କହୁଛି । ଭୂତ ଜାଣୁ । ମୁ ବାରବୁଲା ଲୋକ । ବାହାରେ କୋଉଠି କୋଉଠି ବି ମୁଁ ଏ ଗଡ଼ ବିଷୟରେ ନାନା କଥା ଶୁଣେ । କେତେ ଦିନରୁ ମୋର ଗଡ଼ ଭିତରେ ପଶିବାକୁ ମନ ଥିଲା ।

ଏଥର ଦି'ଜଣଙ୍କର ଚାଲି ଆପେ ଆପେ ବନ୍ଦ ହୋଇଗଲା । ଆଗରେ ପୁଣି ଗୋଟାଏ ଖାଲ । କାହିଁ କୁଆଡ଼େ ଲମ୍ବି ଯାଇଛି ।

ଖାଲ୍ ଆର ପଟେ ମେଘନାଦ ପାଚେରି । ଏବେ ଅବଶ୍ୟ ଭଙ୍ଗା ରୁଜା ହୋଇ ପଡ଼ିଛି । ସୁରଆଡ଼ ଅରମା ରେ ଭର୍ତ୍ତି । ଭଗି କହିଲା –ମନେ ହେଉଛି ଆମେ ଗଡ଼ ଦୁଆରେ ପହଂଚଗଲେ । ଏଇଟା ହଉଛି ଗଡ଼ ଖାଇ । ଆଗେ ଏଥିରେ ପାଣି ଭର୍ତ୍ତି–ହୋଇ ରହୁଥିଲା । କୁମ୍ଭୀର, ମଗର, ସାଙ୍କୁଚ ଛଡ଼ା ଯାଇଥିଲେ । ଗ୍ରଡ଼ିତ ସ୍ତ, ଦମବେଳେ ବ କେହି ପାଣିରେ ପାଦ ଦେବାକୁ ସାହସ କରୁ ନଥିଲେ । ଖାଇ ଆରପଟେ ଗଡ଼-ପାଚେରି,ପାଚେରି ଡେଇଁ ଭିତରେ ପଶିବାକୁ ହେବ ।

ଗଡ଼ଖାଇ ଅବଶ୍ୟ ପୋତି ହୋଇ ପଡ଼ିଲାଣି । ତେବେ ଲଟା ବୁଦାରେ ଦୁର୍ଗମ ହୋଇରହିଛି । ଭଗି କହିଲା– ଗଛ ଗହଳରୁ ଯୋଡ଼-ଭଙ୍ଗା ଖିଲାଣଟା ଅଳପ ଦେଖାଯାଉଛି, ସେଆଡ଼େ ନଜର କର । ମନେ ହେଉଛି, ସେଇଟା ନହବତ ଘର । ରଜାଙ୍କ ଅମଳରେ ସବୁ ଦିନ ଭୋରୁ ସେଠି ନହବତ ବାଜୁଥିଲା । ସେଇ ବାଜଣା ଶୁଣି ଗଡ଼ ଲୋକଙ୍କର ନିଦ ଭାଙ୍ଗୁଥିଲା । ରାଜା ବ ଉଠି ପଡ଼ୁଥିଲେ ।

ଖାଇ ଉପରେ ଠିଆହୋଇ ଦି'ବନ୍ଧୁ ଗୁନ ଗୁନ କଥା ବାର୍ତ୍ତା ହେଉଥିଲେ । ଖାଇ ତଳଟା ଦେଖାଯାଉଥିଲା ଅନ୍ଧାର । ତା'ଭିତରକୁ ପାଦ ବଢ଼ାଇବାକୁ ଏମାନଙ୍କର ସାହସ କୁଳୋଉ ନଥିଲା । ଦିହେଁ କଚୁବାଟେ କୂଳେ କୂଳେ ଆଗେଇ ଗଲେ । ଠାଏ ଗୋଟାଏ ବେଶ୍ ବଡ଼ ବରଗଛ ଖାଇ ଭିତରକୁ ଶୋଇ ପଡ଼ିଥିବାର ଦେଖାଗଲା । ମଦନ କହିଲା—ଦାଦା ! ମୁଁ ଏ ଗଛରେ ଚଢ଼ି ଦେଖେଁ । କେତେ ବାଟତ ଚାଲିଯାଇ ହବ । ତା'ପରେ ଦେଖିବା । ମଦନ ବରଗଛ ଡାଳରେ ଆଗକୁ ଆଗକୁ ଚାଲିଥାଏ । ଭଗିବ ତା ପଛେ ପଛେ ଥାଏ । ମନେ-ହେଉଛି ଆମେ ଅଧାରୁ ବେଶୀ ବାଟ ଚାଲି ଆସିଲେଣି, ମଦନ ପଛକୁ ନ ଅନାଇଁ କହିଲା । ଭଗି ଜବାବ୍ ଦେଲା ନାହିଁ । ସେ କ'ଣ ଭାବୁଥାଏ ।

ଶେଷରେ ବାଟ ଶେଷ ହୋଇଗଲା । ଆଉ ଆଗକୁ ଯାଇହେବ ନାହିଁ । ଖାଇର ଆରପଟର କାନ୍ଥ ଅବଶ୍ୟ ଦେଖାଯାଉଛି । ତେବେ ଆହୁରି ପାଞ୍ଚ ଛ ଫୁଟ ବାଟ ଯିବାକୁ ରହିଛି ।

ଦ'ଜଣ ଯାକ କିଛି ବେଳଯାଏ, ସେଇଠି ବସି ରହିଲେ । ଶେଷରେ ମଦନ କହିଲା —ମୁଁ ଗୋଟାଏ କଥା ଭାବୁଚି । ଦେଖେଁ, ଯଦି ଆମେ ଆରପଟେ ପହଞ୍ଚିଯାଇ ପାରିବା ।

ମଦନ ମଉଜୀରାମକୁ କାନ୍ଧରୁ ଓହ୍ଲାଇଲା । ତାକୁ ଆଉଁସିଦେଇ କଣ ସବୁ ବୁଝାଇଲା । ତା'ପରେ ତା' ଅଣ୍ଟାରେ ସରୁ ଦଉଡ଼ିଟିକୁ ବାନ୍ଧି-ଦେଇ ବାଟୁଳି ଘୂରେଇଲା ପରି ଜୋର୍‌ରେ ଆରପଟକୁ ଛୁଡ଼ିଦେଲା ।

ମଦନର ଆଖିକୁ ପାଣି ଆସିଯାଉଥାଏ । ଏତେ ଦିନର ସାଥୀ । ଯଦି ତା'ର କଣ ହୋଇଯାଏ ? ତେବେ ସେ ଜାଣିଥିଲା, ଆରପଟରେ ନପହଞ୍ଚି ପାରିଲେ ବି ମଉଜୀର କିଛି ହେବ ନାହିଁ । ଦଉଡ଼ି ଧରି ସେ ତାକୁ ପୁଣି ଉପରକୁ ନେଇ ଆସି ପାରିବ ।

ସେ ନିଶ୍ୱାସ ବନ୍ଦ କରି ଦେଖୁଥାଏ । ହଠାତ୍ ହାତରେ ଦଉଡ଼ିରେ ଟାଣ ପଡ଼ିଲା । ମଦନ ଏଥର ଖୁସିରେ ନିଶ୍ୱାସ ପକାଇଲା । ମଉଜୀ ଆରପଟରେ ପହଞ୍ଚି ଯାଇଚି । ଦଉଡ଼ି କିଛି ବେଳଯାଏ ଟାଣିହୋଇ ହୋଇ ଶେଷରେ ଥିର ହେଲା । ମଦନ ଦି'ତିନିଥର ତାକୁ ଟଣା-ଟଣି କରି ଦେଖିଲା । ନା, ଜମା ଢିଲା ହେଉନାହିଁ ।

ଭଗି ଚୁପ୍‌ଚାପ୍ ବସି ସବୁ ଦେଖୁଥିଲା । ମଦନ କହିଲା— ବୁଝିଲୁଚି, ଏଥର ଏଇ ଦଉଡ଼ିରେ ଝୁଲି ଝୁଲି ଆରପଟକୁ ଯିବାକୁ ହେବ ।" ଭଗି କହିଲା ଆଉ ଉପାୟବି ତ ନାହିଁ ।" ମଦନ ଶୀଘ୍ର ଦଉଡ଼ିର ଗୋଟିଏ ପଟ ମୋଟା ଦେଖି ଖଣ୍ଡେ ବରଡ଼ାଳରେ ବାନ୍ଧିଦେଲା । ଦି'ତିନି ଥର ଟଣା ଟଣି କରି ପରଖି ନେଲା । ତା'ପରେ ଭଗି ଆଡ଼କୁ ଅନାଇ କହିଲା—ଏଥର ଯାଏଁ । ଭଗି ତାକୁ ବାରଣ କଲା । ଡେରି ନକରି ଆପେ ଦଉଡ଼ି ଧରି ଝୁଲି ପଡ଼ିଲା ।

ହାତ ଘୁଞ୍ଚାଇ ଘୁଞ୍ଚାଇ ଅଳପ ସମୟରେ ଭଗି ଆରପଟରେ ପହଞ୍ଚିଗଲା । ବାଟତ ବେଶୀ ନୁହେଁ । ଖାଇ ଉପରେ ଠିଆହୋଇ ଭଗି ତିନିଥର ପେଣ୍ଟୁ ବୋବାଇଲା ଭଳି ବୋବାଇଲା । ଏପଟରେ ମଦନ ବୁଝିଲା ଭଗି ଭଲରେ ଆରପଟରେ ପହଞ୍ଚି ଯାଇଛି । ଭଗବାନଙ୍କୁ ଡ଼ାକି ସେ ବି

ଝୁଲିପଡ଼ିଲା । ଆଉ କିଛି ସମୟ ଭିତରେ ମଦନ ପାଖରେ ଯାଇ ଠିଆ ହୋଇଗଲା । ଦୁ'ଜଣ ଯାକ ପରସ୍ପରକୁ ଖୁସିରେ ଅନାଇଲେ ।

ମଦନ ଏଥର ମଉଜଙ୍କୁ ଠାବକଲା । ଗୋଟିଏ ମୋଟା ଶାଳ ଗଛର ଗୁରିପଟେ ଘୂରି ଘୂରି ମଉଜା ଦଉଡ଼ିକୁ ବେଶ୍ ଭଲଭାବରେ ଗୁଡ଼ାଇ ଦେଇ, ଆପେ ଆରାମରେ ବସିଛି । ନଖରେ ଶାଳ ଗଣ୍ଡିକୁ କୁଣ୍ଢାଇ ଧରିଛି । ମନେ ହେଉଛି, ତା'ଉପରେ ଟାଣ ପଡୁନାହିଁ ।

ମଦନ ମଉଜ ଅଣ୍ଟାରୁ ଦଉଡ଼ି ଖୋଲିଦେଇ ତାକୁ ଆଦର କଲା । ଖାଇ ମୂଳରୁ ଦଉଡ଼ିଟା କାଟି ଗୁଡ଼ାଇ ନେଇଲା । ଦୁଇ ବନ୍ଧୁ ଏଥର ପୁଣି ଗ୍ଭଲିବା ଆରମ୍ଭ କଲେ ।

ମନେ ହଉଛି, ଏଥର ସେମାନେ ଅଳପ କଷ୍ଟ କଲେ, ଗଡ଼ ଭିତରେ ପହଞ୍ଚିଯିବେ । ଆଗରେ ଦିଶୁଛି ଗଡ଼ ପାଚେରୀ । ଗୋଟାଏ ବୁଢ଼ା କାଳିଆ ହାତୀ ଭଳି ଆଣ୍ଠେଇ ପଡ଼ିଛି ।

ପାଚେରୀ ଡେଇଁବାକୁ ଅସୁବିଧା ହେବନାହିଁ । କେତେ ଜାଗାରେ ପାଚେରୀ ଭୁସୁଡ଼ି ଗଡ଼ ଭିତର ଦେଖା ଯାଉଛି । ପାଚେରୀ ଦେହରୁ ଖଣ୍ଡ ଖଣ୍ଡ ମାଙ୍କଡ଼ା ପଥର ଖସି ପଡ଼ି ଗ୍ଭରିଆଡ଼େ ବୁଣି ପଡ଼ିଛି । ଦୁ'ଜଣ ଯାକ ପାଚେରୀ କଡ଼େ କଡ଼େ ଗ୍ଭଲିଲେ । ଇଚ୍ଛା ଗୋଟାଏ ବାଟ ପାଇଲେ ଗଡ଼ ଭିତରକୁ ଯିବେ ।

ମଦନ ଦୁ'ଖଣ୍ଡ ପଥର ଉପରେ ଚଢ଼ି ଭିତରକୁ ଅନାଇଲା । କହିଲା—ଏମିତି ପଥର ଉପରେ ଚଢ଼ି ଆରପଟକୁ ଯିବାକୁ ହେବ । ତମେ ମୋ ହାତ ଧର । ଭଗି ମଦନ କଥା ମାନିଲା ।

ଅଳପ ପରିଶ୍ରମ କରି ଦୁ'ଜଣଯାକ ଗଡ଼ ଭିତରେ ପହଞ୍ଚି ଗଲେ । ଭିତରଟା ଏତେ ଜଙ୍ଗଲିଆ ନୁହେଁ । ଲଟାବୁଦାବି ଏତେ ଗହଳିଆ ନୁହେଁ । ମଦନ ଆଉ ଭଗି ଆଗକୁ ଗ୍ଭଲିଲେ । ଦେଖାଗଲା, ଗୋଟାଏ ପୋଖରୀ । ଗ୍ଭରିଆଡୁ ପୋତିହୋଇ ପଡ଼ିଲାଣି । ଖାଲି ଯାହା ମଝିରେ ପାଣି

ମୁହାଁଏ ରହିଛି । ଖରାପଡ଼ ଦେଖାଯାଉଚ ଗୋଟାଏ ଗୋଲ ଦର୍ପଣ ଭଳି । ପୋଖରୀ ମଝିରେ ଘାଟଦଣ୍ଡି, ଭୁଷୁଡ଼ିବା ଅବସ୍ଥାରେ ରହିଚ ।

ମଦନର ମନେ ପଡ଼ିଲା । କିଛିସମୟ ଆଗରୁ ଭଗି ତାକୁ ଏଇ ଗଡ଼ପୋଖରୀ ବିଷୟରେ ଯାହା କହୁଥିଲା । ଦୁ'ଜଣ ଯାକ ଆଗେଇ ଚାଲିଲେ ।

ମଉଜା ମଦନର କାନ୍ଧ ଛାଡ଼ି ଆଗେ ଆଗେ ଧାଇଁଥାଏ । ଏଥର ଦେଖାଗଲା ଗୋଟିଏ ମନ୍ଦିର । ପୋଖରୀଠୁଁ ବେଶୀ ଦୂରରେ ନୁହେଁ । ତା'ରବ ସେଇ ଭଙ୍ଗା ଅବସ୍ଥା ।

ଭଗି କହିଲା—ଇଏ ଗଡ଼ଚଣ୍ଡୀ ମନ୍ଦିର । ଲଢ଼େଇକୁ ବାହାରିବା ଆଗରୁ ରଜା କୁଆଡ଼େ ଏଠି ମଣିଷ ବଳୀ ଦେଉଥିଲେ ।

ମଉଜା ଦୁ'ଖୁରଟା ପଥର ପାଖରେ କଣ ଶୁଙ୍ଘୁଥିବାର ଦେଖାଗଲା । ମଦନ ଯେତେ ଡାକିଲା ଆସିଲା ନାହିଁ । ମଦନ ଚାଲି ଚାଲି ହୋଇ ତା'ପାଖକୁ ଗଲା । ଦେଖିଲା, ତିନିଖୁରଟା ଅଇଁଠା କଦଳୀପତ୍ର ପଡ଼ିଚ । ସବୁଯାକ କଞ୍ଚା । ମାଂସର କଣ୍ଟାବି ପଡ଼ିଚ । ମଦନ ଭଗିକୁ ଇସାରାରେ ପାଖକୁ ଡାକିଲା । ଭଗି ସବୁ ଦେଖିଲା । ଦୁହେଁ ଦୁହିଁଙ୍କ ମୁହଁକୁ ଅନାଇଲେ । ପଦୁଟିଏ ବି କଥା କହିଲେ ନାହିଁ । ଭଗି ଛନଛନ ହୋଇ ଚାରିଆଡ଼କୁ ଭଲକରି ଅନାଇଲା । ଫୁସ୍ ଫୁସ୍ କରି ମଦନ କାନରେ କହିଲା—ଏଥର ଅସଲ ବେଳ ଆସିଗଲା । ଚୋରମାନେ ମନ୍ଦିର ଭିତରେ ଥାଇ ପାରନ୍ତି । ଆଉ କୋଉଠିବି ଥାଇ ପାରନ୍ତି । ଆମକୁ ହୁସିଆର ହେବାକୁ ପଡ଼ିବ ।

ମଦନ କହିଲା— ଛପି ଛପି ଆମେ ମନ୍ଦିର ପାଖକୁ ଚାଲିଯିବା । ତା'ପରେ ମଉଜାକୁ ମନ୍ଦିର ଭିତରକୁ ପଠାଇବା । ସେ ଯଦି କିଛି ବାରି ପାରିବ, ତେବେ ଆମେ ତାକୁ ଦେଖିଲେ ସବୁ ଜାଣିଯିବା ।

ଭଗିର ଏଭିତରେ ମଉଜୀ ଉପରେ ବିଶ୍ବାସ ହୋଇ ଯାଇଥିଲା । ମଉଜୀ ବଣୁଆ ଜନ୍ତୁଟାଏ ସିନା ହେଲେ ତା'ର କାଠିଏ ବୁଦ୍ଧି । ପୁଣି ବଳଠାରୁ ବୁଦ୍ଧି ସବୁବେଳେ ଅଧିକ କାମଦିଏ । ମଦନ ମଉଜୀକୁ କଣ ସବୁ କହି ଛାଡ଼ିଦେଲା । ସେ ଡେଇଁ ଡେଇଁ ଗଛ ଲତା ଭିତରେ ଲୁଚିଗଲା ।

ମଦନ ଆଉ ଭଗି ଲୁଚିଲୁଚି ମନ୍ଦିର ପାଖରେ ପହଞ୍ଚିଗଲେ । ଗୋଟିଏ ଗଛ ଅଢୁଆଳରେ ଲୁଚିରହିଲେ । ମନ୍ଦିରର ଦୁଆର ସେଠୁ ସଫା ଦେଖା ଯାଉଥାଏ ।

କିଛିବେଳ ବିତିଗଲା । ଭଗି ଏଥର ମନ୍ଦିର ପାଖକୁ ଯିବାକୁ ଠିକ୍ କଲା । ହଠାତ୍ ଗୋଟାଏ ଶବ୍ଦ ହେଲା । ଦୁଇ ବନ୍ଧୁ ସେ ଆଡ଼କୁ ଅନାଇଲେ । ଜହ୍ନ ଆଲୁଅରେ ସବୁ ସଫା ଦେଖାଯାଉଥାଏ । ମଉଜୀ ମୁହଁରେ କଣ ଗୋଟାଏ ଧରି ଆଗେ ଆଗେ ଦଉଡ଼ୁଛି । ତା'ପଛେ ପଛେ ମନ୍ଦିର ଭିତରୁ ଗୋଟାଏ କାଳିଆ ଷଣ୍ଡା ଲୋକ ବାହାରି ଆସିଛି ସେ ନଇଁ ପଡ଼ି ଗୋଟାଏ ଟେକା ଉଠେଇ ନେଲା । ମଉଜୀ ଆଡ଼କୁ ଫୋପାଡ଼ିଲା, ହେଲେ ମଉଜୀ ସେତେବେଳକୁ ବୁଦାଭିତରେ ଲୁଚି ଗଲାଣି ।

ମଦନ ଆଉ ଭଗି ଏ ଭିତରେ ଠିକ୍‌ଠାକ୍ ହୋଇ ତିଆରି ହୋଇ ରହିଲେ । ଯଦି ଲୋକଟା ଏ ଆଡ଼କୁ ଆସେ; ତେବେ ଯେମିତି ହେଉ ତାକୁ ଧରିବାକୁ ପଡ଼ିବ ।

ତେଣେ କାଳିଆ ଲୋକଟା ଗଛଲତାକୁ ଆଡ଼େଇ ମଉଜୀକୁ ଖୋଜୁଥାଏ । ଧୀରେ ଧୀରେ ସେ ମଦନ ଆଉ ଭଗି ଲୁଚିଥିବା ଗଛ ଆଡ଼କୁ ଆଗେଇ ଆସୁଥାଏ ।

ଭଗି ମଦନ ଦେହରେ ହାତମାରି ତାକୁ ସତର୍କ କରିଦେଲା । ଗଛ ବୁଦାମୂଳରୁ ଏକାବେଳକେ ଦି'ଜଣ ଯାକ ଲୋକଟା ଉପରକୁ ଡେଇଁ ପଡ଼ିଲେ ।

ଏ ଜଙ୍ଗଲ ଭିତରେ ଏମିତି ତା' ଉପରକୁ କିଏ ଡେଇଁ ପଡ଼ିବ ଏକଥା ଲୋକଟା ମୋଟେ ଭାବି ନଥିଲା । ସେ ଧପ୍ କରି ତଳେ ପଡ଼ିଗଲା ।

ଭଗି ତା’ ପାଟିକୁ ଚପିଧରି ମାଡ଼ି ବସିଥାଏ । ମଦନ ତା’ହାତକୁ ଜାବୁଡ଼ି ଧରି ଥାଏ ।

ଲୋକଟାର ଖୁବ୍ ବଳ । ସେ ନିଜର ସବୁ ବଳ ଖଟାଇ ଭଗିକୁ ଚିତ୍ କରିଦେଲା । ଗୋଟାଏ ଶକତ ଗୋଇଠା ମାଡ଼ରେ ମଦନ ତିନିହାତ ଦୂରରେ ଛିଟିକି ପଡ଼ିଲା । ଲୋକଟା ଉଠି ବସିବା ବେଳକୁ ମଉଜୀ ତା, ଉପରକୁ ଖପ୍ କରି ଡେଇଁ ପଡ଼ିଲା । ତା’ତଣ୍ଟି ଧରି ଓହଳି ପଡ଼ିଲା ।

ମଦନ ଏ ଭିତରେ ଉଠି ବସିଣ । ସେ ଖୁବ୍ ବେଗରେ ଦଉଡ଼ି ଆସିଲା । ଲୋକଟାର ଲମ୍ବ ବାଳକୁ ଧରି ତାକୁ ଝୁଙ୍କାଇ ଦେଲା । ଭଗି ବି ଖସିଯାଇ ପୁଣିଥରେ ଲୋକଟା ଉପରେ ମାଡ଼ିବସିଲା । ଦୁଇଜଣଯାକ ତା’ଉପରେ ଏମିତି ଚଢ଼ାଉ କଲେ ଯେ ଲୋକଟା ଆଉ ‘ହୁଁ’ ଶବ୍ଦଟିଏ କରିବାକୁ ବେଳ ପାଇଲାନାହିଁ ।

ଭଗି ମଦନକୁ ଠାରି ଦେଲା, ଚଞ୍ଚଳ ଆଉ ବାନ୍ଧପକା, ମୁହଁରେ ଗାମୁଛାକୁ ବିଣ୍ଡାକରି ଦେଇଦେ, ଯେମିତି ମୋଟେପାଟି କରିପାରିବ ନାହିଁ । ମୁଣିରୁ ଦଉଡ଼ି ବାହାର କରି ଆଖି - ପିଛୁଳାକେ ମଦନ ତାକୁ ବାନ୍ଧି ପକାଇଲା । ତା’ପରେ ଦି’ଜଣଯାକ ମିଶି ତାକୁ ଗୋଟାଏ ବଡ଼ ଗଛ ଆଡ଼ୁଆଳକୁ ନେଇଗଲେ ଯେମିତି—ସହଜେ ତାକୁ କେହି ଦେଖିପାରିବ ନାହିଁ । ଚଉକସ କରି ବାନ୍ଧି ଦେଇ ପାଟିରେ କନାବିଣ୍ଡା ମାରିଦେଲେ । ଲୋକଟା ରାଗରେ ଖାଲି ଜଳୁଥାଏ ।

ଭଗି ଫୁସ୍ ଫୁସ୍ କରି କହିଲା—ମନ୍ଦିର ଭିତର ଟାକୁ ଦେଖିବାକୁ ହେବ । ସେଠି ଆଉ କେତେଟା ଅଛନ୍ତି କିଏ ଜାଣେ । ତୁ ଘୋଡ଼ା ପାଖରେ ଜଗିଥା । ମୁଁ ଦେଖିଆସେ ।

ମଦନ ରାଜି ହେଲା ନାହିଁ । କହିଲା ତମେ ଏକୁଟିଆ ଯା’ ନାହିଁ । ମୁଁ ବି ଯିବି । କଥାରେ କହନ୍ତି ପରା—ଯୋଡ଼ାକୁ ଘୋଡ଼ା ସରି ନୁହେଁ ।

ଭଗି କହିଲା—ସେ କଥା ନୁହେଁ । ଦି’ଜଣଯାକ ଏକା ସାଙ୍ଗରେ ଗଲେ କାମ ଭଣ୍ଡୁର ହୋଇପାରେ । ଯା’ହେଉ ଯିବୁ ଯଦି ଚାଲ । ଏଇଟା ତ ବନ୍ଧା ହୋଇଛି କୁଆଡ଼େ ବା ଯିବ ? ଆମେ ବି ଚଞ୍ଚଳ ଫେରି ଆସିବା ।

ଦୁ'ଜଣ ଯାକ ଆଗେଇଗଲେ । ଶୁନଶାନ୍ ଚାରିଆଡ଼େ । କେବଳ ଚଢ଼େଇ ମାନଙ୍କ ରାବ ଯାହା ଶୁଭୁଛି । ଦୁ'ଜଣ ଧୀରେ ଧୀରେ ମନ୍ଦିରର ପାହାଚ ଚଢ଼ିଲେ । ଭଗି ଅତି ସାବଧାନରେ ମନ୍ଦିର ଭିତରକୁ ଉଙ୍କି ମାରିଲା । ଭିତରଟା ଅନ୍ଧାର । ତେବେ ଗୋଟାଏ କଣରେ ଦୀପଟିଏ ଜଳୁଥିଲା ।

ଏଥର ମଦନ ବି ଭିତରକୁ ଅନାଇଲା । ଦୀପ ଆଲୁଅରେ ଦେଖାଗଲା, ଜଣେ—କିଏ ଶୋଇଛି । ଏମାନେ ନିଃଶ୍ୱାସ ବନ୍ଦକରି ଅପେକ୍ଷା କଲେ । ଶୋଇଲା ଲୋକ ଉଠିଲା ନାହିଁ ।

ଦୁ'ଜଣଯାକ ଭିତରେ ପାଦ ପକାଇଲେ । ଶୋଇବା ଲୋକ ଟିକିଏ କୁନ୍ଥେଇଲା । ଦୁ'ଜଣ ଯାକ ଅନାଅନି ହେଲେ । ତେବେ କଣ ଲୋକଟାର ଦେହ ଭଲନାହିଁ ?

ଦୁହେଁ ଲୋକଟା ପାଖରେ ପହଞ୍ଚିଗଲେ ଯାହା ସେମାନେ ଭାବିଥିଲେ ସେଇଆ । ଲୋକଟାର ଗୋଡ଼ରେ ପଟି ଭିଡ଼ା ହୋଇଛି, ଜଣା ଯାଉଛି, ତା'ର ଉଠିବାର ଜୋ'ନାହିଁ । ତଥାପି ତାକୁ ତ ଛାଡ଼ିଦେଲେ ହେବ ନାହିଁ ।

ସହଜରେ ଦୁହେଁ ତାର ହାତକୁ ବାନ୍ଧି ଦେଲେ । କାଳେ ପାଟି କରିବ ବୋଲି ପାଟି ବି ବନ୍ଦ କରିଦେଲେ । ଭଗି କହିଲା—ଜାଣିଲୁ, ସେଦିନ ରାତିରେ ମୋହାତରୁ ଯିଏ ଶାବଳ ପାହାର ଖାଇଥିଲା, ମନେ ହେଉଛି, ଇଏ ସେଇ । ଆଉ ମାନେ ତେବେ ଗଲେ କୁଆଡ଼େ ? ଏଠି ଜିନିଷ ପତ୍ର କିଛି ନାହିଁ । ସେ ସବୁ କୋଉଠି ରଖିଲେ ?

ମଦନ କହିଲା—କରେ ! ତୋ ସାଙ୍ଗମାନେ କୁଆଡ଼େ ଗଲେ ? ଲୋକଟା କିଛି କହିଲା ନାହିଁ । ମଦନ ପୁଣି ପଚାରିଲା,—ମାଲ୍ ସବୁ କୋଉଠି ଲୁଚେଇଛ ? ଲୋକଟା ଚୁପ୍ । ଭଗି କହିଲା—ସିଏ ସେମିତି କହିବ ନାହିଁ । ଆମକୁ ନିଜେ ଖୋଜି ଦେଖିବାକୁ ହେବ । ଇଏ ବି ଏମିତି ପଡ଼ିଥାଉ ।

ଦୁ'ଜଣ ଯାକ ମନ୍ଦିର ଭିତର ଭଲ କରି ଦେଖିଲେ । ଦୁ'ଚାରିଟା ଏଣୁତେଣୁ ଜିନିଷ ଛଡ଼ା ସେଠି ଆଉ କିଛି ମିଳିଲା ନାହିଁ । ଭଗି କହିଲା ତୁ ଏଇଠି ବସ । ସାବଧାନ ଥିବୁ କାଳେ କେତେବେଳେ କିଏ ପଶିଆସିବ ହାତରେ ବାଡ଼ିଟା ଧରିଥା । ଯଦି କିଏ ଆସେ, ତେବେ, ତୋର ଦେଖିଲା କାମ କରିବୁ । ମୁଁ ଚଞ୍ଚଳ ଫେରି ଆସିବି ।

ମଦନ କହିଲା—ଦେଖ, ବେଶୀଦୂର ଯିବନାହିଁ ।

ଭଗି ମୁଣ୍ଡ ହଲାଇ ବାହାରକୁ ଚାଲିଗଲା ।



## ଯେ ପାଞ୍ଚେ ପରର ମନ୍ଦ

ମନ୍ଦିର ଚାରିପଟେ ପଥରର ଚଟାଣ । ଠାଏ ଠାଏ ପଲସ୍ତରା ଛାଡ଼ି ବଣୁଆ ଘାସଲତା ମାଡ଼ିଯାଇଛି । ମନ୍ଦିରର ଦଧିନଉତି ବି କୋଉ କାଳରୁ ଖସି ପଡ଼ିଲାଣି । ମନ୍ଦିର ଦେହରେ ନାନା ପ୍ରକାର କାରୁକାର୍ଯ୍ୟ ହୋଇଛି । କେତେ ଠାକୁର ଠାକୁରାଣୀଙ୍କ ମୂର୍ତ୍ତି ବି ଅଛି । ସବୁ ଗୁଡ଼ିକ ଭଙ୍ଗା ।

ମନ୍ଦିର ପଛପଟଟା ଘନ ଜଙ୍ଗଲ । ବଡ଼ ବଡ଼ ଗଛ ଭର୍ତ୍ତି ହୋଇଛି । ଭଗିର ଆଖିରେ ପଡ଼ିଲା, କେଡ଼େ ସାପଟାଏ ଗଛ ଉପରକୁ ଉଠୁଛି ଚଢ଼େଇ ଛୁଆ ଖାଇବା ପାଇଁ । ଭଗି ଚାରିଆଡ଼ ବୁଲି ଦେଖିଲା । କେହି କୁଆଡ଼େ ନାହାଁନ୍ତି । ବାକି ସବୁ ତେବେ କଣ ପବନରେ ଉଡ଼ିଗଲେ ।

ମଉଜୀ ବି ଭଗି ପଛେ ପଛେ ଚାଲିଛି । ବେଢ଼ା କଣକୁ ଗୋଟିଏ ସାନ ଘର । ହୁଏତ ମନ୍ଦିରର ସେବାଇ ଘର ଥିଲା । ମଉଜୀ ସେଇଠି କ'ଣ ଶୁଙ୍ଘୁଥିବାର ଦେଖାଗଲା ।

ଭଗିବି ଗୋଟିଏ ଗୋଟିଏ ହୋଇ ତା'ପାଖକୁ ଗଲା । ଦେଖିଲା —ସେଠି ପଥର ଚଟାଣରେ ଗୋଟାଏ ଫାଟ ଦିଶୁଛି । ସେଇ ଫାଟ ଭିତରୁ ମନ୍ଦା ମନ୍ଦା ପିମ୍ପୁଡ଼ି ବାହାରି ଆସୁଛନ୍ତି । ମଉଜୀ ସେଇଆକୁ ଶୁଙ୍ଘୁଛି ।

ପିମ୍ପୁଡ଼ିମାନେ ମୁହଁରେ ଧଳା ଧଳା ଖଣ୍ଡମାନ କଣ ଧରିଛନ୍ତି । ଭଗି ଭଲକରି ଦେଖିବାକୁ ନଇଁ ପଡ଼ିଲା । କୋଉ କାଳର ଧୂଳି ଚଟାଣ ଉପରେ ଜମି ରହିଛି । ଭଗି ଆଖିରେ ପଡ଼ିଲା -- ଚଟାଣ ଉପରେ କେତେ ପାଦଚିହ୍ନ ପଡ଼ିଛି । କିଛିତ ପୁରୁଣା ,କିଛି ଏକବାରେ ନୂଆ । ଭଗି ପୁଣି ଦେଖିଲା, ପିମ୍ପୁଡ଼ି ମୁହଁରେ ଯାହାକୁ ଧରି ଫାଙ୍କ ଭିତରୁ ବାହାରୁଛନ୍ତି,

ସେସବୁ ଷ୍ଟ୍ରେଟ ଷ୍ଟ୍ରେଟ ଷଡ ଖଣ୍ଡ । ଭଗି ଚକିତ ହେଲା । ଫାଟଚଲ୍ଲୁ ଷଡ ଖଣ୍ଡ କୋଉଠୁ ଆସୁଚ ? ତା'ହେଲେ କ'ଣ ମାଟି ତଳେ ଘର ଅଛୁ ? ଷ୍ଟେରମାନେ ସେଇଠି ଲୁଚନ୍ତ୍ରୁ ?

ଭଗିର ଦେହ ଥର ଉଠିଲା । ମାଟି ତଳ ଘର ! ଏକଥା ସେ ଆଗରୁ ଶୁଣିଚ । ରାଜାମାନେ ଆଗେ ମାଟି ତଳେ ଭଣ୍ଡାରଘର କରୁଥିଲେ । ଦାମିକା ଜନିଷ, ଟଙ୍କା ସୁନା, ହୀରା, ମଣି ସେଇଠି ଲୁଗୃଇ ରଖୁଥିଲେ । ଏଠି ମନ୍ଦରରେ ସେମିତିଆ ଘରଟାଏ ଥିବା ଅସମ୍ଭବ ନୁହେଁ । ଠାକୁରାଣୀ-ଙ୍କର ଗହଣା ଗାଣ୍ଠି ବାସନକୁସନ ରହୁଥିବ । ବାଟ କୁଆଡ଼େ ସେ ଘରକୁ ?

ଭଗି ଗୃହଆଡ଼ ଭଲକର ଦେଖିଲା । ଏଥର ତାକୁ ଦେଖାଗଲା, ଚଟାଣ ଉପରେ ଖଣ୍ଡିଏ ଷ୍ଟ୍ରକୋଣିଆ ପଥର, ଅନ୍ୟ ପଥରଠାରୁ ଅଲଗା ଦଶୁଚ । ତା'ଉପରେ ଦ ଟିକିଏ ଖାଲ ହୋଇଚ । ତା' ଷ୍ଟ୍ରରପାଖ ପାକ ଫାଟ ଦଶୁଚ, ଭଲକର ନଣିଶି ଦେଖିଲା। ସେଇ ଫାଟଦେଇ ପିମ୍ପୁଡ଼ି ବାହାରକୁ ଆସୁଛନ୍ତ୍ରି ।

ଭଗିର ବିଶ୍ୱାସ ହେଲା, ତଳେ ନଶ୍ଚେ ଘର ଅଛୁ । ସେମିତି ହେଲେ ତାକୁ ଦେଖିବାକୁ ପଡ଼ିବ । ଭଗି ଏଥର ମୁଣିରୁ ବାହାର କଲା ସାନ ସାବଳଟିଏ । ପଥର ଖାଲରେ ତାକୁ ପୂରାଇ ସେ ଉପର ଆଡ଼କୁ ଟେକିଲା । ବେଶ୍ ସହଜରେ ପଥର ଖଣ୍ଡ ଉପରକୁ ଉଠିଲା । ତଳେ ଦେଖା ଗଲା ଗୋଟାଏ ବଡ଼ ଫାଙ୍କ ।

ଭଗି ମନ ଖୁସିରେ ଆହୁରି ଜୋର ଲଗାଇ ପଥରକୁ ଓଲଟାଇ ଦେଲା । ବେଶ୍ ବଡ଼ ଗାତଟିଏ । ଜଣେ ମଣିଷ ସହଜରେ ଗଳିଯିବ । ଭିତରକୁ ପାହାଚ ପଡ଼ିଚ ।

ଭଗି ମଦନ କଥା ଭୁଲିଗଲା । ଏକା ଏକା ପାହାଚ ଓହ୍ଲାଇଲା । ମଉଜା ତା' ପଛେ ପଛେ ଥାଏ । ଗଣି ଗଣି କୋଡ଼ିଏଟା ପାହାଚ । ବାବାଃ— ଇଏ କଣପାତାଳପୁର ନା କଣ !

ଶେଷ ପାହାଚ ଉପରେ ଠିଆହୋଇ ଭଗି ଯାହା ଦେଖିଲା, ଉପରେ ତା ରକ୍ତ ପାଣି ଫାଟିଯିବା ଉପରେ । ମାଟିତଳେ ଗୋଟିଏ ଘରକୋଣିଆ କୋଠରୀ । ଦୀପ ଜଳୁଛି । ତିନିଜଣ ବଳୁଆ ଲୋକ ସେ ଘରେ ଅଛନ୍ତି । ନିଜ ନିଜ ଭିତରେ କଥାବାର୍ତ୍ତା ହେଉଛନ୍ତି ।

ଘର କଣରେ ସୁନା ରୁପାର ଗହଣା ଦୀପ ଆଲୁଅରେ ଝକ୍ ଝକ୍ କରୁଛି । କୋଉଠି ଗଦା ହୋଇଛି ପୁରୁଣା ରୂପାଟଙ୍କା । ଭଗି ସବୁ ବୁଝି ପାରିଲା । ଚୋରମାନେ ଏସବୁ ଜିନିଷ କୁଆଡ଼ୁ କୁଆଡ଼ୁ ଚୋରି କରି ଆଣି ଏଇଠି ଲୁଚେଇ ରଖିଛନ୍ତି ।

ଭଗି ଆହୁରି ଦେଖିଲା, ଘର କାନ୍ଥରେ ବର୍ଛା, ଛୁରୀ, କଟୁରୀ, ଦା—ଏମିତି କେତେ ହାତ ହତିଆର ଟଙ୍ଗା ହୋଇଛି ।

ଭଗି କେତେବେଳ ଯାଏଁ, ସେମିତି ଚୁପ୍ ଚାପ୍ ହୋଇ ରହିଲା । କଣ କରିବ, ମନେ ମନେ ଭାବିଲା । ଏମାନେ ତିନିଜଣ ବେଶ୍ ବଳୁଆ ଜଣା ପଡ଼ୁଛନ୍ତି । ଏଣେ ତା'ର ଯେତେ ବଳଥିଲେ ବି ସେ ଏକା । ତା'ର ମଦନ କଥା ମନେ ପଡ଼ିଲା । ତାକୁ ଡ଼ାକିଆଣିବାକୁ ଆଉ ବେଳ ନାହିଁ । ଯାହା ମରିବ, ସେ ଏକା କରିବ ।

ଏତିକିବେଳେ ମଉଜାଘର ଗୋଟିଏ ଭୁଲ୍ କରି ପକାଇଲା । ଘର ଭିତରେ ବୁଲୁ ବୁଲୁ, ଗୋଟାଏ ଲୋକର ଆଖି ତା'ଉପରେ ପଡ଼ିଗଲା । ସେ ପାଟି କରିଉଠିଲା । ଏଁ—ନେଉଳଟାଏ ଏଠିକି କୁଆଡ଼ୁ ଆସିଲା ? ସମସ୍ତେ ପାହାଚ ଆଡ଼କୁ ଅନାଇଲେ । ଭଗିର ଆଉ ଲୁଚିବାର ବାଟ ନାହିଁ ।

ଚୋରମାନେ ପ୍ରଥମେ ଚକିତ ହୋଇ ତା'ଆଡ଼କୁ ଅନାଇ ରହିଲେ । ତେବେ ସେ ଅଳ୍ପ ସମୟ ପାଇଁ । ତା'ପରେ ସମସ୍ତେ ତା'ଆଡ଼କୁ ଧାଇଁ ଆସିଲେ ।

ଭଗି ବି ଡ଼ରିଲାବାଲା ନୁହେଁ । ପିଲା ଦିନରୁ ଲଠିଖେଳ ଶିଖିଛି । ତା' ହାତରେ ବାଡ଼ି ବୁଲୁଥିଲା ବେଳେ, ଶବ୍ଦ ଅବଶ୍ୟ ଶୁଣାଯାଏ । ମାତ୍ର

ବାଡ଼ ଦେଖାଯାଏ ନାହିଁ । ପବନ ବେଗରେ ଲଠି ଘୂରେ । ସେ ଆଜବ ଲଠି ସଜାଡ଼ ଅପେକ୍ଷା କଲା ।

ଶ୍ବେରମାନେ ଏକା ସାଙ୍ଗରେ ତା'ଉପରେ ଚଢ଼ାଉ କଲେ । ଭଗିର ଗୋଟାଏ ସୁବିଧା ଥିଲା । ତା' ପଛପଟୁ କେହି ତା'ଉପରକୁ ଚଢ଼ାଉ କରିବାର ଭୟ ନଥିଲା । ତେବେ ପାହାଡ ମୁହଁଟା ଅଣଓସାରିଆ । ଲାଠି ବୁଲାଇବାକୁ ଅସୁବିଧା । ଭଗି ବାଧହୋଇ ଚଟାଣ ଉପରକୁ ଓହ୍ଲାଇଲା ।

ତା' ହାତର ଗୋଟିଏ ଜବ୍ବର ପାହାରରେ ଗୋଟିଏ ଶ୍ବେର ମାଟିରେ ପଡ଼ଗଲା । ଏଥିରେ ଆଉ ଦୁ'ଜଣ ଶତ୍ରୁ ରଗିଗଲେ । ସେମାନେ ବି କିଛି କମ୍ ନୁହଁନ୍ତି । ଦୁ'ପାଖରୁ ଭଗି ଉପରେ ଏକାଥରକେ ଚଢ଼ାଉ କଲେ । ଭଗି ଚରଖି ଭଳି ବୁଲୁଥାଏ । କେତେବେଳେ ଏପଟ, ତ କେତେବେଳେ ସେପଟ ହୋଇ, ନିଜକୁ ବଞ୍ଚାଉ ଥାଏ । ହେଲେ ଦୁ'ଦୁ'ଜଣ ଷଣ୍ଢା ଜୁଆନ୍ଙ୍କ ସାଙ୍ଗରେ ସେ କେତେବେଳଯାଏ ବା ଏକା ଲଢି ପାରିବ ? ତା' ମନରେ ଡ଼ର ପଶିଗଲାଣି ।

ଡ଼ର ମଣିଷକୁ ବେଶୀ ଧାଲିଆ କରିପକାଏ । ତା'ପରେ ସେଡ଼େ ବଳୁଆ ହେଲେବି ସିଏ ଆଉ ମୁଣ୍ଡଟେକି ଠିଆ ହୋଇପାରେ ନାହିଁ । ଭଗିର ସେଇଆ ହେଲା । କଉପଟୁ ଶ୍ବେର ଜଣେ ଏତିକି ବେଳେ ତା' ହାତକୁ ଲକ୍ଷକରି ଲଠି ଚଳାଇଲେ । ଭଗି ଅବଶ୍ୟ ନିଜ ଲଠି ବୁଲେଇ ବାଧା ଦେଲା । ମାତ୍ର ଶ୍ବେରର ପାହାର ବାଜିଲା, ତା ମୂଠାରେ । ଠକ୍କରି ତା ହାତରୁ ଲଠି ଖସି ପଡ଼ିଲା । ଭଗି ଚେତା ହରାଇ ଚଟାଣ ଉପରେ ଲୋଟି ପଡ଼ିବା ଆଗରୁ ଦେଖିଲା, କାହାର ଧାଇଁ ଆସୁଥିବା ଗୁଇକୁ ।

ଗୁଇଟି ମଦନର । ମଉଜବ୍ରମର ଡ଼ାକରେ ସେ ଲଡ଼େଇ ଜାଗାକୁ ଆସିଛି । ଭଗି ଏକୁଟିଆ ଲଢୁଥିବାବେଳେ ମଉଜୀ ପହଞ୍ଚି ଯାଇଛି, ମଦନ ପାଖରେ । ଭଗିର୍ ଶେଷ ଦେଖି ମଦନର ମନକୁ ପାପ ଛୁଇଁଥିଲା । ମଉଜୀଙ୍କୁ ଏକାଦେଖି ତା' ମନରେ ଛନକା ପଶିଗଲା । ସେ ମଉଜୀ ପଛେ ପଛେ ଠିକଣା ଜାଗାରେ ପହଞ୍ଚି ଗଲା ।

ଭଗିକୁ ଧରି ପକାଇ ଦେଇ ମଞ୍ଜୀ ଯୋଗ ଦୋଷ କରିଥିଲା, ଏଇ ବାଟରେ ସେ ସେଥିରୁ ଛୁଟି ଖୋଜୁଥିଲା ତରେ । ମଦନ ସାଙ୍ଗେ ସାଙ୍ଗେ ସବୁ ବୁଝିପାରିଲା । ତା' ହାତରେ ବ ଲଠି ଅଛି । ପାହାଚ ଉପରେ ପାଦ ଦେବା ଆଗରୁ ସେ ମୁଣିରୁ ବାଟୁଳୀ ଖଣ୍ଡାକୁ ସଜାଡ଼ି ଧରିଥିଲା । ଶେଷ ପାହାଚରେ ଗୋଡ଼ ଦେବା ଆଗରୁ ମଦନ ଛୁଟିକଣିରେ ବାଟୁଳି ଚଢ଼ାଇ ଗୋଟାକୁ ଲଖ କଲା ଆଉ ସାଙ୍ଗେ ସାଙ୍ଗେ ଛୁଡ଼ିଦେଲା ।

ଶ୍ୱେର ହହେଁ, ଏଥିପାଇଁ ମୋଟେ ତିଆରି ନଥିଲେ । ସେମାନେ ମୋଟେ ଭାବି ନଥିଲେ ଯେ, ଗୋଟାକ ପରେ ଗୋଟାଏ ଏମିତି ତାଙ୍କ ଉପରେ ଚଢ଼ାଉ କରିବେ । ଭରତଙ୍କ ବାଟୁଳି ମାଡରେ ହନୁମାନ ଖସି ପଡ଼ିଲା ଭଳି ମଦନର ଗୋଟିଏ ବାଟୁଳିରେ ଷଣ୍ଢା ଶ୍ୱେରଟା ଟଳି ପଡ଼ିଲା । ଆଉ ଶ୍ୱେରଟା ହଠାତ୍ କ'ଣ କରିବ ଭାବି ନପାରି ଖୁବ ବେଗରେ ପାହାଚ ଦେଇ ବାହାର ଆଡ଼କୁ ଧାଇଁଗଲା । ମଦନ ତାକୁ ଗୋଡ଼ାଇଲେ ।

ବାହାରକୁ ଆସି ଶ୍ୱେର ମନ୍ଦିରବେଢ଼ା ଛୁଡ଼ି ପୋଖରୀ ହୁଡ଼ା ଉପରେ ଦୌଡ଼ିଲା । ମଦନ ଯା' ଭିତରେ ବାଟୁଳି ଚଢ଼ାଇ ଆଉ ଗୋଟିଏ ବାଟୁଳି ମାରିଲେ । ଏଥର ବାଟୁଳୀ ଯାଇ ବାଜିଲା ଶ୍ୱେରର ଗୋଡରେ । ଗୋଟାଏ ପାଟି କରି ଶ୍ୱେର ହୁଡ଼ାତଳ କାଦୁଅ ଉପରକୁ ଗଳି ପଡ଼ିଲା ।

ମଦନ ଅନେଇଛି । ଶ୍ୱେର କାଦୁଅ ଉପରକୁ ଉଠିବାକୁ ସବୁ ପ୍ରକାର ଚେଷ୍ଟା କରୁଛି । ମାତ୍ର ମୋଟେ ପାରୁନାହିଁ । ଧୀରେ ଧୀରେ ସେ ଯେମିତି କାଦୁଅ ଭିତରକୁ ପଶିଯାଉଛି । ମଦନ କିଛି ବୁଝିପାରୁନାହିଁ । ଏଣେ ଲୋକଟାର ଆସ୍ତେ ଆସ୍ତେ ବୁଡ଼ିଯାଉଛି । ତାର ଅଣ୍ଟାଯାଏ କାଦୁଅ ଭିତରେ ପଶିଗଲାଣି । ଲୋକଟା ମୁହଁରେ ଭୟ, ଆଶଙ୍କା । ଆଗରେ ଫଣା ଟେକି ସାପକୁ ଝୁଲୁଥିବାର ଦେଖିଲେ, ଲୋକେ ଯେମିତି ଡରି-ଯାଆନ୍ତି, ଶ୍ୱେର ସେମିତି ହୋଇ ଗଲାଣି । ପାଟି କରୁଛି—ବଞ୍ଚାଅ, ମତେ ବଞ୍ଚାଅ । ମରିଗଲି, ମରିଗଲି ।

ସ୍ତ୍ରେରଟା ସତ କଦ୍ରୁଣ କ ବେଳ କାନ୍ଦୁଚ, ମଦନ କଛୁ ବୁଝିପାରୁ ନାହିଁ । ତା' ହାତରେ ବାନ୍ଧୁଲ ଖଡ଼ା ସେମିତ ଅଛୁ । ଏ ଭିତରେ ଲ୍ଲେକଟା ବେକ ପର୍ଯ୍ୟନ୍ତ କାଦୁଅ ଭିତରେ ବୁଡ଼ି ଗଲଣି । ଏଥର ମଦନ ସବୁ ବୁଝିଗଲ । ଲ୍ଲେକଟା କାଦୁଅ ଭିତରେ ଚଲେଇ ଯାଉଚ । ତା' ମୁଣ୍ଡ କାମ କରୁ ନାହିଁ । କେମିତ ସେ ତାକୁ ବଞ୍ଚେଇବ ? ଏଇଆ ଭାବୁ ଭାବୁ ଲ୍ଲେକଟା କାଦୁଅ ଭିତରେ ପୂରା ଲୁଚଗଲ । କାଦୁଅ ଉପରେ ଦୁଇ ଗୁରଟା ସାନ ବଡ଼ ଫୋଟକା ହୋଇ କାଦୁଅ ପୁଣି ସମତଳ ହୋଇଗଲ । ଲୋକଟାର ପାଟି କନ୍ଦୁ ମଦନ କାନରେ ସେମିତ ବାଜୁଥାଏ ।

ମଦନର ମନ ଭାର ହୋଇଗଲା । ଏଥର ତାର ମନେ ପଡ଼ିଲା ଭଗିଦାଦା କଥା । ସେ ସେଠି ଏକା ପଡ଼ିଚ । ପାଖରେ ଦୁଇ ଦୁଇଟା ସ୍ତ୍ରେର । କେତେବେଳେ କଣ ହେବ କଏ ଜାଣେ ।

ସେ ଚଞ୍ଚଳ ପାଦ ପକାଇ ମାଟିତଳ ଘର ଆଡ଼କୁ ଗଲା । ସେଠି ପହଞ୍ଚି ଦେଖିଲା, ସ୍ତ୍ରେର ଦ'ଟା ଅଚେତ ପଡ଼ିଛନ୍ତି । ଭଗିର ବ ଚେତା ଫେରିନାହିଁ । ମଜ୍ଜା ତା' ପାଖରେ ବସି ତାକୁ ଅନାଇଚ ।

ମଦନ ନିଜ ମୁଣିରୁ ଦଉଡ଼ି ବାହାରକରି ଆଗ ସ୍ତ୍ରେର ଦୁଇଟାଙ୍କୁ ଭଲ କରି ବାନ୍ଧି ପକାଇଲା । ତା'ପରେ ଦହିଙ୍କ ଘୋଷାରି ନେଇ ଗୋଟାଏ ପଥର ଦେହରେ ଖଟେଇ ପକେଇଲା । ଚେତା ଆସିଲେବ ଯେମିତ ପଳାଇଯାଇ ପାରିବେ ନାହିଁ । ଏଥର ସେ ଭଗିପାଖକୁ ଫେରିଲା । ଭଗି ସେମିତ ପଡ଼ିଥାଏ । ତେବେ ଦୁଇସ୍ତ୍ରେର ଜାଗା ଆଞ୍ଚୁଡ଼ା ଦାଗଛଡ଼ା ଆଉକଛୁ ହୋଇଥିବାର ଦେଖାଯାଉ ନଥାଏ ।

ଘରର ଗୋଟାଏ କ'ଣରେ ଥିଲ ପାଣି ମାଠିଆ । ମଦନ ସେଠୁ କଛୁ ପାଣି ନେଇଆସି, ଥରକୁ ଥର ଭଗିର ମୁହଁକୁ ଛାଟିବା ଆରମ୍ଭ କଲ । କେତେଥର ଛାଟିଲ ପରେ ଭଗିର ଆଖିପତା ଥରିବାକୁ ଲଗିଲ । ତା' ପରେ ସେ ଆଖି ମେଲ ଅନାଇଲା । ମଦନ କହିଲା- କେମିତ ଲଗୁଚ ?

ଭଗି ବୁଢ଼ୀଆଡ଼କୁ ଅନାଇଲା । ମଦନ ତା' ମନକଥା ବୁଝି ପାରି କହିଲା ଗୋଟାଏ ବେଢ଼ର ମଲାଣି । ଆଉ ସେ'ଟାକୁ ଏଠି ବାନ୍ଧି ରଖିଛି । ଭୟ ନାହିଁ ।

ଏଥର ଭଗି ଉଠି ବସିବାକୁ ଚେଷ୍ଟା କଲା । ମଦନ କହିଲା ଆଉ ଟିକିଏ ଶୁଅ, ଖୁବ ଭଲ ଲାଗିଲେ ଉଠିବ ।

ଭଗି ମାନିଲା ନାହିଁ । ଉଠି ବସିଲା । କହିଲା—ମତେ ଭଲ ଲାଗୁଛି । ମୋର କ'ଣ ହୋଇଛି କି ? ଖାଲି ଏଇ ଡାହାଣ ହାତ ପାପୁଲିଟା ଟିକିଏ ଦରଜ ଲାଗୁଛି ଯାହା ।

ମଦନ ଅନାଇ ଦେଖିଲା । ବେଶ୍ ନାଲି ଦେଖାଯାଉଛି । ମନେ ହେଉଛି ଟିକିଏ ଫୁଲିଛି ବି । ଜଣାପଡ଼ୁଛି, ଦି'ଗୁଡ଼ିଏ ଦିନ ଭୋଗେଇବ । ମଦନକୁ ଏଥର ଖୁବ ଫୁର୍ତ୍ତି ଲାଗୁଥାଏ । ସେ କହିଲା—ଭଗିଦାଦା ! ବେଳ ଆସି ମୁଣ୍ଡଉପରେ ହେଲାଣି । ଏଠିକାର କାମ ତ ଶେଷ । ଏଥର ଘରକୁ ଫେରିବା । ନହେଲେ ସେଆଡ଼େ ସମସ୍ତେ ବ୍ୟସ୍ତ ହେଉଥିବେ ।”

ଭଗି ଠିଆହେଲା । ତଥାପି ତା' ମୁଣ୍ଡ ବୁଲାଇଲା ଭଳି ଲାଗୁଥାଏ । ମଦନ ଛୋଟ ପିଲାଟିଏ ଭଳି କହିଲା—“ଦାଦା । ଖୁବ ଭୋକ । ଏଇଠି ଦେଖିବ, ଯଦି କିଛି ଖାଇବା—ଜିନିଷ ମିଳିଯାଏ ।”

ଭଗି ହସିଲା । କହିଲା—“ସତକଥା ଯାହା ଖିଆ ହୋଇଥିଲା କାଲି ରାତିରେ । ଭୋକତ ନିଶ୍ଚୟ ହେବ । ଦେଖ୍ । ଏଠି ଯଦି କିଛି ମିଳିଯାଏ । ବେଢ଼ରର ହେଲେବି ଖାଇବା ଭିତରେ ଦୋଷ ନାହିଁ । ପାଠ ପଢ଼ି କହିଲା—

“— ଆହାରେ ଭଲମନ୍ଦ ନାହିଁ,
ଯେ ସ୍ଥାନେ ଯେମନ୍ତ ମିଳଇ—”

ମଦନ ଘର କଣକୁ ଧାଇଁଗଲା । ଦେଖିଲା—ଭାତ ହାଣ୍ଡିରେ ଭାତ ରନ୍ଧାହୋଇ ଥୁଆ ହୋଇଛି । ପିମ୍ପୁଡ଼ି ଧାର ଲାଗିଛନ୍ତି । ତାକୁ ଖୁବ ଘିନା ଲାଗିଲା । ସେ ଆଉ କିଛି ଖାଇବା ଜିନିଷ ଅଛି କି ନାହିଁ ଖୋଜିଲା ।

ତା' ବି ମିଳିଗଲା । ଗୋଟିଏ ଟୋକେଇରେ କାଠିଏ ପାଚିଲା କଦଳୀ, କେତେଗୁଡ଼ିଏ ପାଚିଲା କମଳା ଆଉ ଦୁଇ ଡିବୋଟି ବଡ଼ ସପୁରି ଥିବାର ଦେଖାଗଲା । ମଦନ ଖୁସିରେ ତାକୁ ବୋହି ଆଣି ଭଗି ଆଗରେ ଥୋଇଦେଲା । ଭଗି କହିଲା—ଆଜି ତେବେ ଫଳାହାର ? ହଉ, କଣ ଆଉ କରିବା ?

ଦୁହେଁ ଆଉ ନଉରିନଜରି ଖାଇବାକୁ ଆରମ୍ଭ କଲେ । ମଉଜୀ ବି ଆସି ଜୁଟିଲା । ଗୋଟିଏ କଦଳୀରୁ ଚୋପା ଛଡାଇ ମଉଜୀ ଆଡ଼କୁ ଅନାଇ ମଦନ କହିଲା, ଚାଲିବରେ ? ମଉଜୀ ଯେମିତି ଏଇ ଡାକକୁ ଅନାଇ ବସିଥିଲା । କଦଳୀଟାକୁ ନେଇ ଯାଇ ନିଜ ଆଗ ହ' ଗୋଡ଼ରେ-ଧରି ଖାଇବାକୁ ଆରମ୍ଭ କଲା ।

ଦୁହେଁ ଚୁପ୍ ଚୁପ୍ ଖାଉ ଖାଉ—ମଦନ ଚୋରଟାର କାହାଣୀରେ ଏମିତି ବୁଡ଼ି ଯିବାକଥା କହିଲା । ଭଗି କହିଲା, "ଆହା ଲୋକଟା ଏମିତି ମଲା ? ଶୁଣିଛି କୋଉଠି କୋଉଠି ଏମିତି ଚୋରବାଲି ଥାଏ । ଯାହା ଉପରେ ପାଦଦେଲେ ହାତୀ ବି ଆଉ ରକ୍ଷା ପାଏ ନାହିଁ । ସିଧା ପାତାଳକୁ ଚାଲିଯାଏ । ହୁଏତ ଇଏ ବି ସେମିତି କିଛି । ବୁଝିଲୁ, ପାଠ କହିଲା—

"ଯେ ପାଞ୍ଚେ ପରର ମନ୍ଦ,
ତା' ମନ୍ଦ ପାଞ୍ଚନ୍ତି ଗୋବିନ୍ଦ—"

କେତେ ଲୋକଙ୍କୁ ହନ୍ତସନ୍ତ କରିଛି ଏଇ ଲୋକ । ଶେଷରେ ତା' କଲାକର୍ମର ପରିଭବ ପାଇଲା ।" ଭଗି ଗୋଟାଏ ବଡ଼ ନିଃଶ୍ୱାସ ପକାଇଲା ।



# ଦଶ

## ଗୀତ ଶେଷ

ଖିଆ ଶେଷ ହୋଇଥିଲା । ଏଥର ଘର ବାହୁଡ଼ାର ସମସ୍ୟା ଆସି ହେଲା । ବେଳମୁଣ୍ଡ ଉପରେ । ଚଞ୍ଚଳ ଏଠୁ ନ ବାହାରିଲେ ସଞ୍ଜ ଆଗରୁ ଘରେ ପହଂଚ ହେବ ନାହିଁ । ମଦନ ସେଇକଥା କହିଲା ।

ଭଗି କହିଲା—ସେଇ କଥାତ ମୁଁ ଭାବୁଚରେ । ବୁଢ଼ାବୁଢ଼ୀଟା ଲୋକ । ସେଥିରୁ ପୁଣି ଗୋଟାଏ ଘାଇଲା । ଏ ମାନଙ୍କୁ ନେବାକୁ ହେବ । ଏ ସେଇଁ ଟଙ୍କା ସୁନା ଏଠି ଗଦା ହୋଇଚି, ତା'ର ଗୋଟାଏ ଗତି କରିବାକୁ ପଡ଼ିବ ।"

ମଦନ କହିଲା "ଏ ଭିଜାଟା ଚୋରତ ଭଲ ଅଛନ୍ତି । ଆମ ସାଙ୍ଗରେ ଚାଲିପିବେ । ବାକି ରହିଲା ଘାଇଲା ଚୋରଟା—ସେଇଟା ସେମିତି ପଡ଼ିଥାଉ । ତାକୁ ବାଘ ଭାଲୁ ଖାଆନ୍ତୁ କି ତା'ର ସିଏ ଆପେ ମରୁ ।"

ଭଗି ମଦନ ପିଠିରେ ହାତରଖିଲା । କହିଲା "ସେମିତି କହନ୍ତି ନାହିଁ ବାବୁ । ଚୋର ହେଲେ ବି ସିଏ ମଣିଷଟିଏ ତ । ଆମେ ତାକୁ ଏଇ ଅବସ୍ଥାରେ ଛାଡ଼ିଦେଇ ଗଲେ, ସିଏ କେତେଦିନ ବଂଚିବ ? ଆଉ ଏ ପାପ ଆମ ମୁଣ୍ଡରେ ଯିବ ସିନା । ନା, ମଦନ । ତାକୁ ଦଣ୍ଡ ଦେବାକୁ ଆମେ କିଏ ଭଗବାନ୍ ତା'ର ବିଚାର କରିବେ ।"

ମଦନ ଲାଜ ପାଇଲା । କହିଲା "ତମେ ଠିକ୍ କହୁଚ ଦାଦା । ଏମିତିରେ ସିଏ କୋଉ କମ୍ ଦଣ୍ଡ ପାଇଲାଣି କି ? ମୁଁ ଗୋଟାଏ କଥା ଭାବୁଥିଲି ।"

ଭଗି ତା' ଆଡ଼କୁ ଅନାଇଲା । ମଦନ ଆରମ୍ଭ କଲା—ଏମାନଙ୍କୁ ତ ବାନ୍ଧି କରି ନେବାକୁ ପଡ଼ିବ । ଆଉ ଭିତରୁ କିଏ ଜଣେ ତାକୁବୋହି-ନେଇ ପାରିବ । ସେମିତିତ ତାକୁ ଏଠିକି ଆଣିଥିଲେ ।

ଭଗି କହିଲା—"ତୁ ଠିକ୍ କହୁଚୁ । ତେବେ ଆଉ ଡେରି କରିବା ନାହିଁ । ଏଭିତରେ ଚୋରି ଦୁ'ଜଣ ଯାକର ଚେତା ଆସିଯାଇଥିଲା । ଭଗି ସେମାନଙ୍କ ପାଖକୁ ଯାଇ କହିଲା—ତମେ ଆମ କଥା ଶୁଣିଲ । ଆମେ ତମକୁ ଆମ ସାଙ୍ଗରେ ନେଇଯିବୁ । ତା' ସାଙ୍ଗରେ ତମର ଧନ ଦଉଲତ । ଯାହାର ଯାହା ଆଣିଚ, ସମସ୍ତଙ୍କୁ ଫେରାଇ ଦବାକୁ ପଡ଼ିବ। ତମ ସାଙ୍ଗ, ଯିଏ ମୋ ମାଡ଼ରେ ଘାଇଲା ହୋଇ ମନ୍ଦିରରେ ପଡ଼ିଚି, ତାକୁ ବି ନେବାକୁ ପଡ଼ିବ ।" ଚୋରି ଦୁ'ଜଣ କିଛି କହିଲେ ନାହିଁ । ମଦନ ଘରଭିତରୁ ଗୋଟାଏ ଅଖା ଆଣିଲା । ସୁନାରୁପା ଯାହାଥିଲା, ସବୁକୁ ପୂରାଇ ମୁହଁ ବାନ୍ଧିଲା ।

ଚୋର ମାନଙ୍କୁ ଫିଟାଇ ସମସ୍ତେ ବାହାରକୁ ଆସିଲେ । ଭଗି କହିଲା—"ମୁଁ ଆଉ ଗୋଟାଏ କଥା ଭାବୁଥିଲି । ବାଟ କମ୍ ନୁହେଁ । ଏଣେ ପୁଣି ବଣୁଆ ରାସ୍ତା । ଡ଼ାଳକାଟି ସେଥିରେ ଗୋଟାଏ ଝିଡ଼ିଭଳିଆ କରିଦେବା । ତା'ଉପରେ ପତର ବିଛାଇ ଦେବା । ରୋଗିଣା ଲୋକଟି ତା'ଉପରେ ଶୋଇବ । ଏମାନେ ଦୁ'ଜଣ ତାକୁ କାନ୍ଧେଇବେ । ଅଣ୍ଟାରେ ଦଉଡ଼ି ବାନ୍ଧି ଆମେ ଧରିବା । ଆଉ ଜଣେ ଏ ଅଖାକୁ ମୁଣ୍ଡେଇବ । ମୋହାତରେ ବାଡ଼ିଥିବ ଆଉ ତୋ ହାତରେ ବାଟୁଳି ଖଡ଼ା । ତା'ର କରାମତି ଏମାନେ ଜାଣନ୍ତି । ପଳାଇବାକୁ ମନକରିବେ ନାହିଁ । ନା' କଣ କହୁଚୁ ?"

ମଦନ କହିଲା—"ସେଇଆତ ମନେ ହଉଚି । ଯଦି ପଳାନ୍ତି, ତେବେ ଜୀବନର ଆଶା ଛାଡ଼ି ପଳାଇବେ ।"

ଏହାପରେ ମଦନ ଆଉ ଭଗି ମିଶି କିଛି ଗଛଡ଼ାଳ କାଟି ଆଣିଲେ । ଅଳ୍ପ ସମୟ ଭିତରେ ଡ଼ାଳପତ୍ର ପାରି ଗୋଟିଏ ଭଲ ଶେଯ ବି ତିଆରି କରିଦେଲେ । ଦୁ'ଜଣଯାକ ଧରା ଧରି କରି ଭିତରୁ ଘାଇଲା ଲୋକଟିକୁ ନେଇ ଆସିଲେ । ଶେଯ ଉପରେ ଶୁଆଇ ଦେଲେ ।

ମଦନ ଆଗରୁ ଗଛରେ ବନ୍ଧା ହୋଇଥିବା ଲୋକଟିକୁ ବି ନେଇ ଆସିଲା । ତିନିଜଣଙ୍କ ଅଣ୍ଟାରେ ଦଉଡ଼ି ବାନ୍ଧିଦେଇ, ସେମାନଙ୍କୁ ଆଉଥରେ ସବୁ ବୁଝାଇ ଦେଲା ।

ଶ୍ରେଷ୍ଠମାନେ ପ୍ରଦେ ବ କଥା କହୁଥିଲେ ନାହିଁ । ଚୂପ୍‌ଚାପ୍ ବେଗୀ ଲୋକଙ୍କଙ୍କୁ ଜାଳିରେ ଥୋଇଲେ । ସମସ୍ତଙ୍କ ଅଖାରେ ଦଉଡ଼ି । ମଦନ ହାତରେ ତା'ର ଆରମ୍ଭ । ମଉଜରାମ ମଦନ କାଛରେ ବସି ଗୁରୁଆଡ଼କୁ ଅନାଉ ଥାଏ ।

ଏଥର ସମସ୍ତେ ଗୁଲବାକୁ ଆରମ୍ଭ କଲେ । ଭୃଗି କହିଲା "ଆରେ ଆମେ ଯୋଉ ବାଟରେ ଆସିଥିଲେ, ସେ ବାଟରେ ତ ଯାଇ ପାରିବା ନାହିଁ । ଆମେ ଯଦବା ଗୁଲଗଲେ, ଏମାନେ ଯିବେ କେମିତି ? ଏ ବେଗୀ ଯିବ କେମିତି ?"

ମଦନ କହିଲା,—"ସତ କଥାତ । ତେବେ କଣ କରିବା ?" ଭଗି କ'ଣ ଭାବିଲା ତା'ପରେ କହିଲା—"ଗୋଟାଏ ବାଟ ଅଛି । ଏମାନେ ସବୁବେଳେ ଏଠି କାରବାର ହେଉଛନ୍ତି । ଆମେ ଯେମିତି ଆସିଲେ, ସେମାନେ କେବେହେଲେ ସେମିତ ଯାଉନଥିବେ । ନିଶ୍ଚେ କୋଉଠି ସହଜ ବାଟ ଅଛି । ଏମାନଙ୍କୁ ତା'ଜଣା । କରେ ! ମୁଁ ଚିହ୍ନେ କହୁଛି ।"

କେହି କିଛି କହିଲେ ନାହିଁ । ମଦନର ରାଗିଲେ । ସେ ବଡ଼-ପାଟିରେ କହିଲା, "କଣ ବାବୁମାନଙ୍କର କାନରେ ପଡୁନାହିଁ । ମୋ ହାତର ଏଇ ଛୋଟ ଜିନଷଟିର ବଳକେତେ ଜାଣିଚନ୍ତି ? ଏତେବାଟ ଗାଁକୁ ନନେଇ, ଏଇଠି ତେବେ ତମ କାମ ବନ୍ଦେଇ ଦେବା । ନା' କଣ କହୁଚ ?"

ଭଗି ହସିଲା । କହିଲା, "ଯୋଉ ମାନେ ଅସୁବିଧାରେ ପଡ଼ିଥାନ୍ତି, ସେମାନଙ୍କୁ ଏମିତ କୁହାଯାଏ ନାହିଁ ବାବୁ ! ସେମାନେ ଆପେ ଆପେ ଆମକୁ ବାଟ ବତେଇବେ ଯେ ।"

ମଦନର ରାଗ ତଥାପି ଯାଉନଥାଏ । ସେ କହିଲା—"ତମେ ବ ସେମିତି । ଦୟାବତୀ ଖାଇବ ପାଇଲ କହିଲି ! ଯାହା ପାଇଁ ଯୋଉ ଭଷା ନା ।"

ଭଗି ପୁଣି ସେମାନଙ୍କୁ ବୁଝାଇଲ । କହିଲ,—"ଦେଖ ଆମେ ତମକୁ ଛାଡ଼ି ଯାଇ ପାରୁନୁ । ଯେମିତି ହେଲେ, ତମକୁ ସାଙ୍ଗରେ ନେବୁ । ଆମକୁ ବାଟ ଜଣାନାହିଁ । ତମେ ଜାଣିଚ । କହି ଦେଲେ, ସମସ୍ତେ ସୁବିଧାରେ ଯିବା । ନହେଲେ ହଇରାଣ ।"

ଏତିକି ବେଳେ ରୋଗଣା ଶ୍ୟେରଟା ପାଣି ମାଗିଲ । ମଦନ କହିଲ, ମରୁସେଇଟା ତାକୁ ଏଇଠି ଫୋପାଡ଼ ଦେଇ ଯିବା । ଗୋଟାଏ ତ ଭାର କମିବ ! ଲୋକଙ୍କଟା ଜାଣିଚି ଉଠିଲ । ଭଗି ଆପ୍ରେ ବୋଟିଏ ପତ ଠୋଲରେ ପୋଖରୀରୁ ପାଣିନେଇ ଆସିଲ । ଶ୍ୟେରକୁ ପିଇବାକୁ ଦେଲ । କହିଲ—କାନ୍ଦନାହିଁ । ଅଳ୍ପ ସମୟ ଭିତରେ ଆମେ ଗାଁରେ ପହଁଚିଯିବା । ଆଗ ମୁଁ ବଇଦ ପାଖରୁ ଓଷଦ ଆଣି ତମକୁ ଦେବ । ତମ ଗୋଡ଼ରେତ କିଛି ଓଷଦ ଲଗାଇ ନାହଁ । ଅଳପ ଦିନରେ ଭଲ ହୋଇଯିବ ।

ଏତେବେଳକେ ଶ୍ୟେର ମୁହଁରୁ କଥା ବାହାରିଲା । ସେ କହିଲା ତମେ ସତ କହୁଚ ବାବୁ । ତମେ ମୋତେ ଓଷଦ ଆଣି ଦେବ ? ମୁଁ ପୁଣି ଚାଲିବୁଲିପାରିବି ?'

ଭଗି କହିଲା—'ପାରିବ ନାହିଁ କାହିଁକି ? ତମର କଣ ହେଇଚି କି ? ହେଲି ହେଲ ଟିକିଏ ଘାଆ ହୋଇ ଯାଇଚି । ହାଡ଼ଭଙ୍ଗା ଗଛ ଛେଚି ବାନ୍ଧି ଦେଲେ ଦିନଦି'ଟାରେ ଭଲ ହେଇଯିବ ।

ଶ୍ୟେର କହିଲ—ଗୁହଖିଆ କାମଟାତ କରି ପକେଇଛି । ତମକୁ ଆଉ କଣ କହିବି ? ହେଲେ, ତମକୁ ସତ କହୁଚି ବାବୁ ! ଉପାସ ଭୋକରେ ମରିବି କି ଭିକ ମାଗିବି ସିନା, ହେଲେ ଆଉଏ କାମ କେବେ କରିବ ନାହିଁ ।' ଭଗି କହିଲା, ସାବାସ୍ । ପେଟ ପୋଷି ବାକୁ ମିହନତ୍ ଦରକାର । ଏ ଗୋଟେ ଚପାଟି କାମରୁ କ'ଣ ମିଳିବ ?"

ମଦନ ଅନ୍ୟ ମାନଙ୍କୁ କହିଲ-"କରେ ! ତମେ ମାନେ ଶୁଣୁଚଟି !

ରୋଗିଣା ଶ୍ୟେରଟି କହିଲ—କେତେ—ଲୋକଙ୍କୁ ଉଚ୍ଛନ୍ନ କରି, ଆମେ ଏଠି ଏ ସମ୍ପତ୍ତି ଠୁଳ କରିଥିଲୁ । ସେମାନଙ୍କୁ ତାଙ୍କ ଧନ ଫେରାଇ

ଢବ । ମୁଁ ତମକୁ ଠିକ୍‌ବାଟ କଢ଼େଇ ବଣ ବାହାରକୁ ନେଇଯିବ ।
ଗୋଡ଼ଯିନା ଭାଙ୍ଗିଚ । ଆଖିତ ଠିକ୍‌ଅଛୁ ।''

ଆଉ ଜଣେ ଚୋର କହିଲା—"କାଲୁ ଠିକ୍ କହୁଚ । କେତେ ଲୋକଙ୍କର ନିଃଶ୍ୱାସ ଆମ ଉପରେ ପଡ଼ୁଚ । କଥାରେ କହନ୍ତି ପରା ଚୋରଘରେ ସବୁଦିନେ ଅନ୍ଧାର ନଥାଏ । ଯାହା ହେଉ, ଆମକୁ ଧର ତ ନଉଚ । କଣ କରିବ ?''

ଭଗି କହିଲା—''ଆମେ କିଏ ? ଦେଶରେ ଆଇନ୍ ଅଛୁ । ବିଚାର ଅଛୁ । ସେ ତା'ର କାମ କରିଯିବ ମୁଁ ଭାବୁଚ, ସେଥିରେ ତମର ଭଲ ହେବ । ଆଉ ଯାହା ହେଉ, ତମକୁ ପୁଣି ଥରେ ଏକାମ କରିବାକୁ ଛାଡ଼ିଦିଆଯିବ ନାହିଁ ।''

ଚୋରମାନଙ୍କ ମନରେ ଏଥର ଟିକିଏ ଆଶା ହେଲା ବୋଧେ । ସେମାନେ ଆଗେ ଆଗେ ବାଟ ଦେଖାଇ ଚାଲିଲେ ।

ମଦନର ଏଥର ତା' ଘର କଥା ବେଶୀ ମନେପଡ଼ିଲା । ଘରେ ସମସ୍ତେ କଣ କରୁଥିବେ ? ଭଗିଦାଦାଟା ସିନା ଖୁବ୍ ଦଉଡ଼କଟା । ତାଙ୍କ ଘରେତ କାନ୍ଦ ବୋବାଳ ପଡ଼ଯାଇଥିବ । ମନ କିନ୍ତୁ ଭାରିଖୁସି । ଏତେ ଦିନକେ କାମ ଭଳି କାମଟାଏ କରିଚ । ବେଳ ଦିପହର ଗଡ଼ିଗଲାଣି ।

